# କବି ଯଦୁମଣି



ଓଡ଼ିଶା ପବ୍ଲିସିଂ ହାଉସ

ବ୍ରହ୍ମପୁର, କଟକ, ସମ୍ବଲପୁର, ଜୟପୁର

# କବି ଯଦୁମଣି

ଲେଖକ :—
ପଣ୍ଡିତ ଶ୍ରୀ ନରସିଂହ ମହାପାତ୍ର

ପ୍ରଥମ ସଂସ୍କରଣ

୧୯୫୮

ଓଡ଼ିଶା ପବ୍ଲିଶିଂ ହାଉସ୍
ବ୍ରହ୍ମପୁର, କଟକ, ସମ୍ବଲପୁର, ଜୟପୁର

ମୂଲ୍ୟ—ଏକଟଙ୍କା ।

# କବି ଯଦୁମଣି

( ୧ )

ଆଜକୁ ପ୍ରାୟ ଦୁଇଶହ ବର୍ଷ ପୂର୍ବେ—ଭଞ୍ଜୀୟ ସାହିତ୍ୟର ରସାସ୍ୱାଦନର ଉପଭୋଗରେ ଉତ୍କଳୀୟ ସୁଧୀ ସମାଜ ତଥା ଜନସାଧାରଣ ନିଜକୁ କୃତାର୍ଥ ମଣୁଥିଲେ, ସେହି ସମୟରେ କବି ଯଦୁମଣିଙ୍କ ଆବିର୍ଭାବ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ସମୟୋପଯୋଗୀ ବୋଲି ମନେହୁଏ ।

ଗଞ୍ଜାମଜିଲ୍ଲା ଅନ୍ତର୍ଗତ ଆଠଗଡ଼ ତାଲୁକାରେ ଚିତ୍ରକର ବଂଶରେ ଆଶୁକବି ଯଦୁମଣିଙ୍କର ଜନ୍ମ ୧୭୮୧ ମସିହାରେ । ଶରଣବତ୍ସଳ ଆଠଗଡ଼ର ତଦାନୀନ୍ତନ ରାଜାଙ୍କ ଗୁଣଗ୍ରାହକତା ଏହି ଚିତ୍ରକର ବଂଶର ସୁଖ୍ୟାତିର ପ୍ରଧାନ ହେତୁ । ମନ୍ଦିର ଗାତ୍ରରେ ଦେବବିଗ୍ରହ ଚିତ୍ରଣ ଓ ପାଷାଣ, ଦାରୁ (କାଷ୍ଠ)ରେ ବିଗ୍ରହ ନିର୍ମାଣ ଯଦୁମଣିଙ୍କର ବଂଶର ଥିଲା—କୌଳିକ ବୃତ୍ତି । କବି ଯଦୁମଣିଙ୍କ ପିତା ମୁକୁନ୍ଦ ମହାପାତ୍ର ଚତୁର କଳାବିତ୍ ବୋଲି ସେ ସମୟରେ ସୁନାମ ଅର୍ଜିପାରିଥିଲେ । ଯଦୁମଣିଙ୍କ ଜନ୍ମ ସମୟକୁ ଏହି ବର୍ଦ୍ଧିଷ୍ଣୁ ପରିବାରର ଆର୍ଥିକ ଅବସ୍ଥା ସରଳ ନ ଥିଲା । ମୁକୁନ୍ଦ ମହାପାତ୍ରେ ନିଜ ଆର୍ଥିକ ଅବସ୍ଥାର ଭିତର ସାମ୍ୟ ରକ୍ଷା କରିବା ପାଇଁ ନୟାଗଡ଼ (ନୂଆଗଡ଼)ରୁ ତତ୍କାଳୀନ ରାଜା ଶ୍ରୀ ବିନାୟକ ସିଂହ ମାନଧାତାଙ୍କ ବିଗ୍ରହ ନିର୍ମାଣ କାମରେ

ନିଯୁକ୍ତ ହେଲେ । ଏ ଦେବ ବିଗ୍ରହଙ୍କ ନାମ—ଶ୍ରୀ ରାଧାକୃଷ୍ଣ । ଅପରୂପ ମୂର୍ତ୍ତି ନିର୍ମାଣରେ ମହାରାଜାମାନେ ସିଦ୍ଧହସ୍ତ ଥିଲେ ବୋଲି ପ୍ରବାଦ କୁହାଯାଇଛି । ତେଣୁ ରାଜାଙ୍କ ଅନୁଗ୍ରହ ଏହାଙ୍କ ପକ୍ଷରେ ଅତି ସ୍ୱାଭାବିକ ଥିଲା । ରାଜା ମାନଧାତା କଳା-କୁଶଳତାରେ ମୁଗ୍ଧ ହୋଇ ମୁକୁନ୍ଦଙ୍କୁ ସ୍ଥାୟୀ ଭାବରେ ନୟାଗଡ଼ରେ ବସବାସ କରିବା ପାଇଁ ଅନୁରୋଧ କଲେ । ମୁକୁନ୍ଦ ନିଜ ଜନ୍ମଭୂମି ଆଠଗଡ଼ ଛାଡ଼ି ନୟାଗଡ଼ ରାଜଧାନୀର ପାଖ ଇଟାମାଟି ଗ୍ରାମରେ ସପରିବାର ରହିଲେ । ନୟାଗଡ଼କୁ ଆସିଲାବେଳକୁ ଯଦୁମଣିଙ୍କର ବୟସ ଆଠ । ଏହିଠାରେ ଯଦୁମଣି ଅଳ୍ପକାଳ ମଧ୍ୟରେ ଚାଟଶାଳୀ ପାଠ ଶେଷକରି ସଂସ୍କୃତ ଶିକ୍ଷା କରିବାକୁ ମନବଳାଇଲେ । ଆଜିକାଲି ପରି ସେ ସମୟରେ ଟୋଲ ବା ସଂସ୍କୃତ ସ୍କୁଲ ପ୍ରଭୃତି କିଛି ନ ଥିଲା । ବ୍ରାହ୍ମଣ ପଣ୍ଡିତମାନେ ନିଜ ଗୃହ ଚଉପାଢ଼ୀରେ ଛାତ୍ର-ମାନଙ୍କୁ ପଢ଼ାଉଥିଲେ—ବିନା ବେତନରେ । ସେ କାଳରେ ବ୍ରାହ୍ମଣଙ୍କ ବ୍ୟତୀତ ଅନ୍ୟ ଶ୍ରେଣୀର ଲୋକ ପକ୍ଷରେ ସଂସ୍କୃତ ଶିକ୍ଷା ସହଜରେ ଲଭ୍ୟ ନ ଥିଲା । କିନ୍ତୁ ବାଳକ ଯଦୁମଣିଙ୍କ ପ୍ରତିଭା ଓ ବିଦ୍ୟାଶିକ୍ଷା ପ୍ରତି ପ୍ରଗାଢ଼ ଅନୁରାଗ ଦେଖି ଗଡ଼ ନିକଟସ୍ଥ ମାନଧାତାପୁର ଶାସନର ଜନୈକ ପଣ୍ଡିତ ତାଙ୍କର ଅଧ୍ୟାପନା ଭାର ଆନନ୍ଦରେ ଗ୍ରହଣ କଲେ । ଏହିଠାରେ ଯଦୁମଣି 'ଅମରକୋଷ' ମୁଖସ୍ଥ କରି ସଂସ୍କୃତ ବ୍ୟାକରଣରେ ସାଧାରଣ ଜ୍ଞାନ ଲାଭ କରିଥିଲେ । ତାଙ୍କର କବି ପ୍ରତିଭାର ସ୍ଫୁରଣ ଦେଖାଗଲା—ସତରବର୍ଷବେଳକୁ ।

•

କବିତ୍ୱର ଉନ୍ମେଷ ହେବା ସଙ୍ଗେ ସଙ୍ଗେ ସେ ପୂର୍ବବର୍ତ୍ତୀ କବିମାନଙ୍କର କବିତା ଆଲୋଚନାରେ ବ୍ୟାପୃତ ରହିଲେ ।

କବି ସମ୍ରାଟ୍ ଭଞ୍ଜଙ୍କ କାବ୍ୟକବିତା ଆଲୋଚନା କରିବା ପାଇଁ ଇଟାମାଟିର ପଣ୍ଡିତମାନଙ୍କ ସାହଚର୍ଯ୍ୟ, କିଶୋର ଯଦୁମଣିଙ୍କ କବିପ୍ରତିଭା ଉନ୍ମେଷରେ ଯଥାର୍ଥ ସହାୟକ ହୋଇଥିଲା ବୋଲି କହିଲେ ଅତିରଞ୍ଜିତ ହେବନାହିଁ । ଯୁବକ ଯଦୁମଣି ପୂର୍ବବର୍ତ୍ତୀ ପ୍ରତିଷ୍ଠିତ କବି, କବିତ୍ୱ ଶକ୍ତିର ଭୂୟୋବିକାଶ ପାଇଁ ଦୈବୀ-ଶକ୍ତିର ଆଶ୍ରା ନେଇଥିବା କଥା ଲୋକମୁଖରୁ ଶୁଣି, ସେଥିପାଇଁ ସେ ସେହିଆଡ଼କୁ ଆଖି ବୁଲାଇଲେ । ଭାଗ୍ୟକୁ ଧୂମସର ତାଲୁକାର କବିରାଜ ବାହିନୀପତି ପରି ନିଷ୍ଠାବାନ୍ ଓ ଉଚ୍ଚକୋଟିର ପଣ୍ଡିତଙ୍କୁ ପାଇ ନିଜ ଅଭିଳାଷ ତାଙ୍କ ପାଖରେ ବ୍ୟକ୍ତ କଲେ । ପଣ୍ଡିତ ବାହିନୀପତି ଯୁବକ ଯଦୁମଣିଙ୍କ ସୌମ୍ୟ ଦର୍ଶନ ଓ ତୀକ୍ଷ୍ଣମେଧାର ପରିଚୟ ପାଇ 'ହୟଗ୍ରୀବ ମନ୍ତ୍ର' ସାଧନ ପାଇଁ ଉପଦେଶ ଦେଇଥିଲେ ବୋଲି କିମ୍ବଦନ୍ତୀ କହେ । ଏହି ମନ୍ତ୍ର ସାଧନରେ ସିଦ୍ଧିଲାଭ କଲାପରେ ନିଜର କବିତ୍ୱ ସହଜ ଲଭ୍ୟ ହୋଇଥିବାର ସେ ସ୍ପଷ୍ଟ ସ୍ୱୀକାର କରିଅଛନ୍ତି ।

"ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଘୋଡ଼ା ନୁହେ ଲୋଡ଼ା କରନ୍ତି ଭୂପେ
ଯୋଡ଼ା ହେବା ମୋ ପ୍ରୌଢ଼ା କବିତାକୁ
ବଳି ବଳି ରସ ଦାମି କର୍ଣ୍ଣିକୁ
ଭଲେ ଭଲ ଖଣ୍ଡେ ଖଣ୍ଡ ଯେ
ନବ ଦୁର୍ବାଦଳ ଶ୍ୟାମଳ କୃପାରୁ ମୋ ନାମ ଉତ୍କଳ ଘଣ୍ଟ ଯେ ।"

ଏହି ଖଣ୍ଡ କବିତାରୁ କବିଙ୍କର ରଚନାଶୈଳୀ ଓ ସ୍ପଷ୍ଟ-ବାଦିତା ସହଜେ ଅନୁମେୟ । କବିଙ୍କ ମାତା 'ସାଧବୀ' ଜଣେ

ଯଥାର୍ଥରେ ସଧର୍ମ ଓ ରୂପବତୀ ନାରୀ ଥିଲେ । ପୁତ୍ରର ସମାଜରେ ପ୍ରତିଷ୍ଠା ଦେଖି ପିତାମାତା ଉଭୟେ ନିଜକୁ କୃତାର୍ଥ ମଣୁଥିଲେ । କିଶୋର ଯଦୁମଣି ଦଶପଲ୍ଲା-ରଞ୍ଜନବାସୀ ଶ୍ରୀ ରଘୁନାଥ ସୁନ୍ଦରାୟଙ୍କ କନ୍ୟାର ପାଣି ଗ୍ରହଣ କରିଥିଲେ । କନ୍ୟାର ନାମ, ଶ୍ରୀମତୀ ଖଞ୍ଜନ ଦେଈ । ରସିକ କବି ରୂପବତୀ ଓ ଗୁଣବତୀ ଖଞ୍ଜନ ଦେଈଙ୍କୁ ଧର୍ମପତ୍ନୀ ରୂପେ ପାଇଥିବାରୁ ସେମାନଙ୍କ ଦାମ୍ପତ୍ୟ ଜୀବନ ମଧୁମୟ ହେବା ସ୍ୱାଭାବିକ । ଏହି ମଧୁମୟ ଜୀବନରେ କନ୍ୟା ସନ୍ତାନ ଲାଭକରି ପତିପତ୍ନୀ ଉଭୟେ ନିଜକୁ ଭାଗ୍ୟବାନ୍ ବୋଲି ଭାବିବାର କିନ୍ତୁ ଅସ୍ୱାଭାବିକତା ନ ଥିଲା । ମାତ୍ର ବିଧାତାର ବିଧାନ ବଡ଼ବିଚିତ୍ର, ପୁତ୍ରଟିର ଅକାଳ ଓ ଆକସ୍ମିକ ବିୟୋଗରେ ପିତାମାତାଙ୍କର ସୁଖର ସଂସାର ଭାଙ୍ଗି ପଡ଼ିଲା । ଏ ଦୈବୀ ଆଘାତରେ କିଛିକାଳ ମ୍ରିୟମାଣ ହୋଇ ପଡ଼ିଥିଲେ ହେଁ ପରେ ଯଦୁମଣି ନିଜ ଉନ୍ନତି ମାର୍ଗରେ ଅଗ୍ରସର ହେବାରେ ଲାଗିଲେ । ତାଙ୍କର ଏକମାତ୍ର କନ୍ୟା 'ରମା'କୁ ଖଣ୍ଡପଡ଼ାବାସୀ ନରସିଂହ ଗୁଣୀନ୍ଦ୍ରଙ୍କ ସହିତ ଶୁଭ-ପରିଣୟ କର୍ମ ସମ୍ପନ୍ନ କରାଇ ଜାମାତାଙ୍କୁ ନିଜ ଘରେ ରଖିଲେ । ଦୌହିତ୍ର ତାଳଧ୍ୱଜଙ୍କୁ ସେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ବୋଲି ଲୋକ ମୁଖରୁ ଶୁଣାଯାଏ ।

କବି ଯଦୁମଣି କାବ୍ୟକବିତା ରଚନା ପ୍ରତି ଆକୃଷ୍ଟ ହୋଇ-ଥିଲେ ମଧ୍ୟ ନିଜ କୌଳିକ ବୃତ୍ତି ପ୍ରତି ବୀତସ୍ପୃହ ନ ଥିଲେ । ଆବାଲ୍ୟରୁ ଜ୍ଞାନଚର୍ଚ୍ଚା ସଙ୍ଗେ ସଙ୍ଗେ ବିଗ୍ରହ ଖୋଦନ ଓ ଚିତ୍ର-ଶିଳ୍ପକଳାର ଅନୁଶୀଳନରେ ଆଶାନୁରୂପ ଦକ୍ଷତା ଲାଭ-କରିଥିଲେ ।

ନୟାଗଡ଼ର ରାଜା ବିନାୟକ ସିଂହ ମାନଧାତା ଯୁବକ ଯଦୁମଣିଙ୍କ ଆଶୁକବିତ୍ୱ ଓ ପ୍ରତ୍ୟୁତ୍ପନ୍ନମତିତ୍ୱରେ ମୁଗ୍ଧ ହୋଇ ତାଙ୍କୁ ନିଜ ପଣ୍ଡିତ ସଭାରେ ଉପଯୁକ୍ତ ଆସନ ଦେଇଥିଲେ । କେବଳ ଏତିକି ନୁହେଁ, ନିକଟର ଦାଗଡ଼ା ଖୁରିପ କେତେକ ଭୂସ୍ୱପତି ରାଜାଙ୍କଠାରୁ ସେ ଯାଇଥିଲେ । ଆକବର ବାଦଶାହଙ୍କ ଦରବାରରେ ଯେପରି ବୀରବଳ, ବଙ୍ଗଦେଶର ରାଜା କୃଷ୍ଣଚନ୍ଦ୍ରଙ୍କ ରାଜସଭାରେ ଯେପରି ଗୋପାଳ ଭାଣ୍ଡ, ନିଜ ନିଜ ପ୍ରତିଭା ବଳରେ ନାନା ହାସ୍ୟରସର କବିତା ସୃଷ୍ଟି କରି ସଭାସଦ୍‌ବର୍ଗଙ୍କର ପ୍ରୀତିଭାଜନ ହୋଇଥିଲେ, ସେହିପରି ନୟାଗଡ଼ ରାଜଦ୍ୱାରରେ ଯଦୁମଣି ଆଦୃତ ହେଉଥିଲେ—ରସିକ କବି ବୋଲି । କବିତା ପାଦ ପୂରଣରେ ସେ ଥିଲେ—ଜଣେ ଧୁରନ୍ଧର କବି ।

କବି ଓ ପଣ୍ଡିତମାନେ ଦେଶାଟନରେ ବାହାରି ରାଜା-ମହାରାଜାଙ୍କ ନିକଟରେ ନିଜର କବିତ୍ୱ ଓ ବିଦ୍ୱତ୍ତାର ପରିଚୟ ଦେଇ ପ୍ରଚୁର ଧନସମ୍ପତ୍ତି ଲାଭ କରିବାର ଉଦାହରଣ ସେ କାଳରେ ଊଣା ନ ଥିଲା । ରସିକ କବି ଓଡ଼ିଶାର ନୟାଗଡ଼ ବ୍ୟତୀତ ବୌଦ, ଅନୁଗୋଳ ଓ ଗଞ୍ଜାମ ଜିଲ୍ଲାର କେତେକ ରାଜଧାନୀକୁ ଯାଇ ଯଥୋଚିତ ରାଜ ଆତିଥ୍ୟରୁ ବଞ୍ଚିତ ହୋଇ ନ ଥିଲେ । ସେ ଓଡ଼ିଶାର ସବୁ ରାଜଧାନୀକୁ ଯାଇ ନ ଥିଲେ ମଧ୍ୟ ସୁବାସିତ ପୁଷ୍ପର ସୌରଭ ପରି ତାଙ୍କର ଯଶ-ସୌରଭ ଓଡ଼ିଶାର ସର୍ବତ୍ର ବ୍ୟାପି ଯାଇଥିଲା । ସେ ଅସାଧାରଣ ପଣ୍ଡିତ ନ ଥିଲେ, ତଥାପି ତାଙ୍କର ବ୍ୟଙ୍ଗୋକ୍ତି ପୂର୍ଣ୍ଣ କବିତା ଓ କଥାବାର୍ତ୍ତାରେ ସରସତା ସବୁଶ୍ରେଣୀର ଲୋକଙ୍କର ଉପଭୋଗ୍ୟ ଥିଲା ।

ଥରେ ରସିକ କବି ଯଦୁମଣି ଅନୁଗୋଳ ରାଜ୍ୟକୁ ଯାଇ-ଥିଲେ । ସେଠାର ରାଜା ଜଣେ ଖଣ୍ଡ ପ୍ରକୃତିର ଲୋକ । ସେ କବି ଓ ପଣ୍ଡିତମାନଙ୍କୁ ବିଦାୟ ସ୍ୱରୂପ ପ୍ରଚୁର ଟଙ୍କା କଉଡ଼ି ଦିଅନ୍ତି, କିନ୍ତୁ ଖଣ୍ଡ ବା ଡକାୟତଦଳଙ୍କୁ ପଠାଇ ସେମାନଙ୍କୁ ଦେଇଥିବା ଟଙ୍କାକଉଡ଼ି ନିଜ କୋଷକୁ ଫେରାଇ ଆଣନ୍ତି । ଘନଅରଣ୍ୟ ପୂର୍ଣ୍ଣ ମାର୍ଗ ଏପରି ଡକାୟତି କରିବାରେ ପୋଷକତା କରୁଥିଲା । ଯଦୁମଣି ରାଜାଙ୍କର ଏ କୁଟନୀତି ଶୁଣି ରାଜାଙ୍କୁ ଏପରି ଖଣ୍ଡବୃତ୍ତିର ଉପଯୁକ୍ତ ପ୍ରତିଷେଧକ ବ୍ୟବସ୍ଥା କରିବା ପାଇଁ ମନେ ମନେ ସ୍ଥିର କଲେ । ସେ ରାଜାଙ୍କ ପାଖରେ ପରିଚୟ ଦେବାରେ ରାଜା ଅତି ସମାଦରରେ ତାଙ୍କୁ ବସାସଞ୍ଜା ଦେଇ ତାଙ୍କର ଆତିଥ୍ୟ ପାଇଁ ସବୁପ୍ରକାର ବ୍ୟବସ୍ଥା କରିଦେଲେ । ଯଦୁମଣି କିଛିଦିନ ରାଜ ଆତିଥ୍ୟରେ ରହି ବିଦାୟ ନେବାପାଇଁ ରାଜାଙ୍କୁ କହିଲେ । ସେ କହିଲେ—"ତୁମ୍ଭଙ୍କ ଅନୁଗ୍ରହରୁ ଏଇ କେତେଦିନ ବଡ଼ ଆନନ୍ଦରେ ଦିନ କଟାଇଲି, ତୁମ୍ଭ ଅନୁମତି ଦେଲେ ମୁଁ ନିଜ ରାଜ୍ୟକୁ ଫେରିଯିବି ।" ଯଦୁମଣିଙ୍କ ପ୍ରତିଭା ଓ ସରସ କଥା-ବଳରେ ରାଜା ବିଶେଷ ପ୍ରୀତ ହୋଇଥିଲେ । ତେଣୁ ଉପଯୁକ୍ତ ବିଦାୟ ଦେବାପାଇଁ ପାତ୍ରମନ୍ତ୍ରୀମାନଙ୍କୁ ଆଦେଶ ଦେଲେ । ବିଦାୟ ନେବା ପୂର୍ବରୁ ଯଦୁମଣି କହିଲେ—"ତୁମ୍ଭଙ୍କୁ କାଲି ଗୋଟିଏ ନୂତନ ବିଦ୍ୟାର ସନ୍ଧାନ ଦେଇଯିବି । ତୁମ୍ଭ ଦେଖିବାକୁ ଅନୁମତି ଦେଲେ, ଆପ୍ୟାୟିତ ହେବି ।" ରାଜା ସେଥିରେ 'ହଁ' ଭରିବାରୁ ଚତୁର ଯଦୁମଣି ପରଦିନ ସକାଳେ ରାଜାଙ୍କ ପାଖେ ହାଜର ହେଲେ । ଗୋଟିଏ ବଡ଼ ବାକ୍ସ ଭିତରୁ ସାତୋଟି ସାନ-ବାକ୍ସ ବାହାର କରି ରଖିଲେ । ଖଣ୍ଡିଏ ଅତି ଶ୍ରେଷ୍ଠ ପତଳା କନା ବାହାର କରି କହିଲେ—"ଏହି କନା ଆଖପାଖିରେ ରଖି

ଏହି ବାକ୍ସ ଗୁଡ଼କ କ୍ରମାନୁସ୍ୱେ ଦେଖିଲେ, ତୁମ୍ଭ ନିଜ ସପ୍ତ-ପୁରୁଷଙ୍କୁ ଦେଖିପାରିବେ । କିନ୍ତୁ ଯେ ଜାରଜ ହୋଇଥିବ, ତାକୁ କିଛି ଦେଖାଯିବନାହିଁ ।" ଏହି 'ତିରସ୍କରଣୀ ବିଦ୍ୟା' କାମାଖ୍ୟା-ଦେବୀଙ୍କ ପ୍ରସାଦରୁ ମୁଁ ପାଇଛି ।" ରାଜା ଏହାର ସତ୍ୟତା ପରୀକ୍ଷା କରିବା ପାଇଁ ଯଦୁମଣି କହିବା ମୁତାବକ ବାକ୍ସଗୁଡ଼କ ଦେଖିଲେ; କିନ୍ତୁ କିଛି ଦେଖି ନ ପାରି ନିଜ ଚିନ୍ତା କଲେ । ମାତ୍ର ସପ୍ତପୁରୁଷଙ୍କୁ ଦେଖି ନ ପାରିବା କଥା ପ୍ରକାଶ କଲେ ଜାରଜ ବୋଲି ପ୍ରମାଣିତ ହେବେ; ତେଣୁ ସପ୍ତପୁରୁଷଙ୍କୁ ଦେଖିଲେ ବୋଲି କହିବାକୁ ବାଧ୍ୟହେଲେ । ପାତ୍ରମନ୍ତ୍ରୀମାନେ ମଧ୍ୟ ବାକ୍ସଗୁଡ଼କ ଦେଖି ରାଜା କହିଲା ପରି କହିଲେ । ସମସ୍ତେ ସମସ୍ୱରେ ଯଦୁମଣିଙ୍କ "ତିରସ୍କରଣୀ ବିଦ୍ୟାର" ଭୂୟସୀ ପ୍ରଶଂସା କରିବାରେ ଲାଗିଲେ ।

ଯଦୁମଣିଙ୍କ ବୁଦ୍ଧି ବିଚକ୍ଷଣତାର ପରିଚୟ ପାଇ ଆଶାତୀତ ଭାବରେ ତାଙ୍କୁ ଟଙ୍କାକଉଡ଼ି, ପାଟଜଥା ସହ ମେଲାଣି ଦେଲେ । ରାଜଦ୍ୱାରରୁ ବିଦାୟନେଇ ଚତୁର ଯଦୁମଣି ରାଜାଙ୍କ ଜଗନ୍ନାଥ ମନ୍ଦିରରେ ପଶି ଭିତରୁ ଦୁଆର କିଳିଦେଇ ନିଘୋଡ଼ ଶୋଇଲେ । ସନ୍ଧ୍ୟାବେଳେ ଠାକୁରଙ୍କ ଆଳତି କରିବା ପାଇଁ ସେବକ ଆସି ଦେଖେ ତ, ଦୁଆର ଭିତରୁ କିଳାହୋଇଛି । ଦେଉଳ ଭିତରେ କେହି ରହିଛି ଅନୁମାନ କରି ପୂଜାରୀ ବହୁତ ଡାକିଲା, ଶେଷରେ ସେ ନିରସ୍ତ ହୋଇ ରାଜାଙ୍କୁ ଏ ଘଟଣା ଜଣାଇଲା । ରାଜା ସଦଳବଳେ ମନ୍ଦିର ପାଖକୁ ଆସିଲେ । ବହୁଲୋକ ପାଟିତୁଣ୍ଡ କରି ଦୁଆର ବାଡ଼େଇବାରୁ ଯଦୁମଣି ନିଦରୁ ଉଠିଲା ପରି ଛଳନା କରି ଆଖି ମଳି ମଳି ଦୁଆର ଫିଟାଇ ବାହାରକୁ ଆସିଲେ । ଯଦୁମଣି ଦେଉଳ ଭିତରେ ରହି ଏପରି କାଣ୍ଡ କରିଥିବାର ଦେଖି

ତାଙ୍କୁ କାରଣ ପଚାରିଲେ । ଯଦୁମଣି କହିଲେ—“ମହିମା, କାଲି ରାତିଟି ମୋର ଅନିଦ୍ରାରେ କଟିଥିଲା । ଛାମୁଙ୍କ ପାଖରୁ ମେଲାଣି ନେଇ ଆସିଲାବେଳକୁ ପ୍ରଚଣ୍ଡ ଖରା । ତେଣୁ ଦେଉଳ ଭିତରେ ଟିକିଏ ଥଣ୍ଡା ଲାଗିବ ବୋଲି ଗଡ଼ଗଡ଼ ହେଲି । ବିଚାରିଥିଲି—ଖରାର ତେଜ କମିଆସି ‘ଶିତୁଳି’ ପଡ଼ିଆସିଲେ ବାଟ ଚାଲିବାରେ ଆଉ କଷ୍ଟ ହେବନାହିଁ । କିନ୍ତୁ କେତେବେଳେ ନିଘୋଡ଼ ନିଦ ମାଡ଼ିଆସିଲା ଜାଣିପାରିଲି ନାହିଁ । ଆଜ୍ଞା, ଏଥିରେ ମୋର ଯାହା ଦୋଷ ହେଲା, କ୍ଷମା କରିବେ । ଆଉ ଗୋଟିଏ ଆଶ୍ଚର୍ଯ୍ୟ କଥା ଯେ, ଏ ଦେଉଳ ଭିତରେ ଥିବା ଦେବତାଗୁଡ଼ିକ ଏପରି ନିର୍ଜୀବ ! ଏତେ ଡକାହକା, ଗୋଳମାଳ ଶୁଣି ଦୁଆର ଟିକିଏ ଫିଟାଇଲେ ନାହିଁ । ଆମ ରାଇଜର ଦେବତାମାନେ ଡାକିଲେ “ହଁ” କରନ୍ତି; ପୂଜାରୀମାନଙ୍କୁ ଯାହା କହିବ, ସେ କାମ ସିଧା କରନ୍ତି ।” ଏହା ଶୁଣି ରାଜା ବିସ୍ମିତ ହୋଇ ଯଦୁମଣିଙ୍କୁ ପଚାରିଲେ, “ତୁମେ ଯାହା କହୁଛ, ତା କଅଣ ସତ ?” ଯଦୁମଣି କହିଲେ—“ଛାମୁଙ୍କ ଆଗରେ କଅଣ ମିଛ କହୁଛି ? ଛାମୁଙ୍କର ବିଶ୍ୱାସୀ ଲୋକଙ୍କୁ ମୋ ସାଙ୍ଗରେ ଆମ ରାଇଜକୁ ପଠାନ୍ତୁ, ସେ ନିଜ ଆଖିରେ ସବୁ ଦେଖିଆସିବେ ।”

ବିଷୟର ସତ୍ୟାସତ୍ୟ ଜାଣିବା ପାଇଁ ଯଦୁମଣି ହାତୀରେ ବସି ନିଜଦେଶକୁ ଯିବେ ଓ ତାଙ୍କ ସଙ୍ଗେ ଦୁଇଜଣ ବିଶ୍ୱସ୍ତ କର୍ମଚାରୀ ପଠାଇବା ପାଇଁ ରାଜା ସବୁ ବନ୍ଦୋବସ୍ତ କରିଦେଲେ । ଏ ରାଜା ଜଣେ ଖଣ୍ଡପ୍ରକୃତିର ଲୋକ ବୋଲି ଯଦୁମଣି ଶୁଣିଥିଲେ । ରାଜା ଯାହା ଟଙ୍କାପଇସା କବି ଓ ପଣ୍ଡିତମାନଙ୍କୁ ଦେଇ ବିଦାୟ ଦିଅନ୍ତି, ସେ ସବୁ ଖଣ୍ଡା ପଠାଇ ବାଟରୁ ଛଡ଼ାଇ ଆଣିବା କଥା

ପୂର୍ବେ କୁହାଯାଇଛି । ତାର ପ୍ରତିଦ୍ୱନ୍ଦ୍ୱୀଙ୍କୁ ବ୍ୟବସ୍ଥା ରୂପେ ସୁଚତୁର ଯଦୁମଣିଙ୍କର ଏ କୌଶଳ ।

ଯଦୁମଣି ବଡ଼ ଆଶ୍ରମରେ ଓ ନଗପଦରେ ନୟାଗଡ଼ରେ ରହୁଥିଲେ । ସାଙ୍ଗରେ ଯାଇଥିବା ରାଜ କର୍ମଚାରୀଙ୍କ ଆତିଥ୍ୟରେ କୌଣସି ପ୍ରକାର ତ୍ରୁଟି କରି ନ ଥିଲେ । ସନ୍ଧ୍ୟାବେଳେ ଉକ୍ତ କର୍ମଚାରୀଦ୍ୱୟଙ୍କୁ ସାଙ୍ଗରେ ଧରି 'ଦେବତା' ସନ୍ନିଧିରେ କେତେ-ଜଣ ବ୍ରାହ୍ମଣଙ୍କୁ ଡାକି ନିଜ କଥାର ସତ୍ୟତା ଦେଖାଇଦେଲେ । ସେମାନେ ଯଦୁମଣିଙ୍କ କୂଟ-କୌଶଳ ବୁଝିପାରି ତାଙ୍କୁ ଧନ୍ୟ ଧନ୍ୟ କଲେ । ଯଦୁମଣି ନିଜର ପରିଚୟ ପୂର୍ବରୁ କୁହାଯାଇଥିବା "ଭଲେ ଭଲ, ଖଣ୍ଡେ ଖଣ୍ଡ" କବିତାକାରରେ ଲେଖି, ସେମାନଙ୍କ ହାତରେ ରାଜାଙ୍କ ପାଖକୁ ପଠାଇଦେଲେ । ଆଉ ଅନୁଗୋଳରେ ପାଦ ପକାଇ ନ ଥିଲେ ।

( ୨ )

ନୟାଗଡ଼ ରାଜସଭାରେ ଯଦୁମଣିଙ୍କ ଅଖଣ୍ଡ ପ୍ରତିପତ୍ତି ଓଡ଼ିଶାରେ ବ୍ୟାପିଯାଇଥିବା କଥା ଆଗରୁ କୁହାଯାଇଛି । ଗଞ୍ଜାମର ତତ୍କାଳୀନ କବିଚନ୍ଦ୍ରବାକ୍ ଚନ୍ଦ୍ରପାଣି ପଟ୍ଟନାୟକ ନିଜର କବିତ୍ୱ ଓ ପାଣ୍ଡିତ୍ୟ ବଳରେ ପୁରୀ ଗଜପତି ମହାରାଜାଙ୍କ-ଠାରୁ 'ଚନ୍ଦ୍ରବାକ୍' ଉପାଧି ପାଇଥିଲେ । ସେ ଥରେ ନୟାଗଡ଼ ପଣ୍ଡିତ ସଭାରେ ନିଜର କୃତିତ୍ୱ ଦେଖାଇବା ପାଇଁ ସେଠାକୁ ଆସିଥିଲେ । କିନ୍ତୁ ରାଜପରିଷଦର ପଣ୍ଡିତମାନେ ଅନାଦର ପାଇଥିବାରୁ ଚନ୍ଦ୍ରପାଣି ପଟ୍ଟନାୟକଙ୍କ କବିତ୍ୱ ଓ ପାଣ୍ଡିତ୍ୟ

ଜାଣିବାର କୌଣସି ସମ୍ଭାବନା ନ ଥିବାର ଦେଖି ରାଜା ଚିନ୍ତିତ ହେଲେ । ରାଜାଙ୍କୁ ବିଷଣ୍ଣ ଦେଖି, ଯଦୁମଣି କହିଲେ, "ପ୍ରଭୁ କିଆଁ ଚିନ୍ତା କରୁଛନ୍ତି ? ଆଜ୍ଞା କରନ୍ତୁ ମୁଁ ପଟ୍ଟନାୟକଙ୍କ ସଙ୍ଗେ ଥରେ ଶାସ୍ତ୍ର ଯୁଦ୍ଧ କରେ ।" ପଟ୍ଟନାୟକଙ୍କ ଅଗାଧ ପାଣ୍ଡିତ୍ୟ ଆଗରେ ଯଦୁମଣିଙ୍କ ପାଣ୍ଡିତ୍ୟ କେତେ ! ଏହି କଥା ଭାବି ରାଜା ପ୍ରଥମେ ମଙ୍ଗୁ ନ ଥିଲେ । ପରେ ଯଦୁମଣିଙ୍କ ସନିର୍ବନ୍ଧ ଅନୁରୋଧରେ 'ନାହିଁ ମାମୁଁଠାରୁ କଣାମାମୁଁ ଭଲ' ନୀତିରେ ରାଜିହେଲେ, ସମସ୍ତ ନିର୍ଦ୍ଦିଷ୍ଟ ହେଲା, ସଭା ବସିଲା । ରାଜଧାନୀର ବହୁ ମାନ୍ୟଗଣ୍ୟ ଲୋକ ନିମନ୍ତ୍ରିତ ହୋଇ ସଭାକୁ ଆସିଲେ । କବି ପଟ୍ଟନାୟକଙ୍କ ସମ୍ମାନ ପ୍ରଦର୍ଶନ ନିମିତ୍ତେ ସୁସଜ୍ଜିତ ସ୍ୱତନ୍ତ୍ର ଆସନର ବ୍ୟବସ୍ଥା ହେଲା । ରାଜା ଯଥାବିଧି ଆସନ ଗ୍ରହଣ କଲା ପରେ ଯଦୁମଣିଙ୍କୁ ପଟ୍ଟନାୟକଙ୍କ ସଙ୍ଗେ ପରିଚିତ କରାଇଦେଲେ । ଶାସ୍ତ୍ରାଲୋଚନା ଆରମ୍ଭ ହେଲା । ଦର୍ଶକ ମଣ୍ଡଳୀ ସତୃଷ୍ଣ ନୟନରେ ଆଲୋଚନା ଶୁଣିବାରେ ଲାଗିଲେ । କବି ପଟ୍ଟନାୟକ ଯଦୁମଣିଙ୍କର ରୂପ ଯୌବନ ଓ ବଚନ ଭଙ୍ଗି ଦେଖି ପ୍ରୀତ ହୋଇଥିଲେ । ସେ ଯଦୁମଣିଙ୍କୁ ପାଦପୂରଣ ପାଇଁ ପ୍ରଶ୍ନ କଲେ, "ପ୍ରମତ୍ତକେଶରୀ ଗଜ କପୋଳକୁ ନ ଚିରି ଖାଇ କଦାଚିତେ ?" ଯଦୁମଣି ସଙ୍ଗେ ସଙ୍ଗେ ଉତ୍ତର ଦେଲେ—"ମହିଷାରିରଥ (ଦୁର୍ଗାଙ୍କ ବାହନ ସିଂହ) ଗଣନାଥନାଥ କଇଲାସ ପରବତେ ।" ଯଦୁମଣିଙ୍କ ପାଦପୂରଣରେ ଅତ୍ୟନ୍ତ ପ୍ରୀତହୋଇ ପଟ୍ଟନାୟକ ପୁଣି ପାଦପୂରଣ ଲାଗି ପ୍ରଶ୍ନ କଲେ—"କବା ପ୍ରଶଂସିବା ପ୍ରଶଂସା ପଦବୀ ଅଛିବୋଲି ବଳାରାତିରେ ?" (ଅର୍ଥାତ୍ ଇନ୍ଦ୍ରଙ୍କଠାରୁ ଅଧିକ ବୋଲି କାହାକୁ ପ୍ରଶଂସା କରିଯାଇପାରେ ? )

ପଦ୍ମମଣି ତତ୍‌କ୍ଷଣାତ୍ ଉତ୍ତର ଦେଲେ—
"ମୁକ୍ତ କରିଅଛି ମୋ ବାଳାମଣିର ଶ୍ରୀଚରଣ ବଳାଗଡରେ ।"
ଏଥର ମଧ୍ୟ ପାଦପୂରଣରେ ପଦ୍ମମଣିଙ୍କ କୃତିତ୍ୱ ଅନନ୍ୟ ଦେଖି, ଗୁଣଗ୍ରାହୀ କବି ପଟ୍ଟନାୟକେ ପଦ୍ମମଣିଙ୍କର ଭୂୟସୀ ପ୍ରଶଂସା କଲେ ।

କବି ପୁଣି ପ୍ରଶ୍ନ କଲେ—"କେଉଁ ସମୟରେ ବଧୂ ଶ୍ୱଶୁର ସଙ୍ଗ ଇଚ୍ଛା କରେ ?"

ପଦ୍ମମଣି ଉତ୍ତର ଦେଲେ—

"ଦ୍ରୁପଦ ନନ୍ଦନା ଗୃହୁ ସୁକୋଣୀ
ଖାମଖାର ସଙ୍ଗେ ସୁରତେ ରସି
ଗବାକ୍ଷ ମାର୍ଗରେ ବସି ବରସେ
ଲେଉଡ଼େ ଯେତେବେଳେ ପବନକୁ ସେ
ସେହି ସମୟରେ
"ବଧୂ ଶ୍ୱଶୁର ସଙ୍ଗ ଇଚ୍ଛାକରେ ।"

ପଦ୍ମମଣିଙ୍କର ଏବମ୍ବିଧ ପାଦପୂରଣରେ ଅଦ୍ଭୁତ କୃତିତ୍ୱ ଦେଖି ସମସ୍ତେ ମନ୍ତ୍ରମୁଗ୍ଧ ପରି ରହିଗଲେ । ରାଜା ପଟ୍ଟନାୟକଙ୍କୁ ଲକ୍ଷ୍ୟ କରି କହିଲେ,—"ଆପଣଙ୍କ ସମସ୍ତ ପ୍ରଶ୍ନର ଯଥାଯଥ ଉତ୍ତର ପଦ୍ମମଣି ଦେଇ ପାରିଛନ୍ତି । ଆପଣ ଏବେ ପଦ୍ମମଣିଙ୍କ ପ୍ରଶ୍ନର ଉତ୍ତର ଦେଇ ଆମ୍ଭମାନଙ୍କୁ କୃତାର୍ଥ କରନ୍ତୁ ।"

ପଦ୍ମମଣିଙ୍କ ପ୍ରଶ୍ନ—

"ଛବିରେ କେ ଜଣେ ନବ ରବିଙ୍କି ?
କେ ପେଟେ ପୋଷେ ଧନୁଶର ନକ ?

ଜଳଠାରେ ସ୍ଥିତି କାହାର ମତ ?
କାର ଭୟ ନାହିଁ ଜଗତପ୍ରତି ?
ବିଗୁରି କହିବ,
ଗୁରି ପଦାର୍ଥ ଏକ ହୋଇଥିବ ।"

କବି ଏ ପ୍ରଶ୍ନର ଉତ୍ତର ଦେବା ପାଇଁ ବହୁ ଚିନ୍ତା କରି ନିଜର ଅକ୍ଷମତା ପ୍ରକାଶ କରି କହିଲେ—"ସେ ଜୀବନରେ ସର୍ବ ପ୍ରଥମେ ଏଇ ଉତ୍ପାତମାନ ଯୁବ କବିଙ୍କ ନିକଟରେ ପରାସ୍ତ ହେଲେ । ଏଣୁ ଗଜପତି ମହାରାଜାଙ୍କ ପ୍ରଦତ୍ତ 'ଚକ୍ରବାକ୍' ଉପାଧି ବନ୍ଦ ଅର୍ଥାତ୍ ନିରର୍ଥକ ହେଲା ।"

ରାଜାଙ୍କ ଆଦେଶରେ ଯଦୁମଣି ପ୍ରଶ୍ନର ଉତ୍ତର ଦେଲେ— 'ଅବିର' ।

ପ୍ରଥମପାଦ ପ୍ରଶ୍ନରେ 'ଅବିର' ଅର୍ଥାତ୍ ଫଗୁରଙ୍ଗ ବାଳସୂର୍ଯ୍ୟର ରଙ୍ଗିମାଠାରୁ ଅଧିକ ।

ଦ୍ୱିତୀୟପାଦ ପ୍ରଶ୍ନରେ—'ଅବୀର' ଅର୍ଥାତ୍ ଯେ ବୀର ନୁହେ, ସେ ଧନୁଶର ବକ ପେଟ ପୋଷେ ।

ତୃତୀୟ ପାଦରେ—'ଅବିର' ଅର୍ଥାତ୍ ଛେଳିର ସବୁବେଳେ ପାଣିକି ଭୟ ।

ଚତୁର୍ଥ ପ୍ରଶ୍ନର ଉତ୍ତର—ଅ (ବିଷ୍ଣୁ), ବି (ପକ୍ଷୀ) ଅର୍ଥାତ୍ ବିଷ୍ଣୁଙ୍କ ବାହନ ଗରୁଡ଼ ସାପକୁ ଭୟ କରେ ନାହିଁ ।

କବି ପଟ୍ଟନାୟକେ ଯଦୁମଣିଙ୍କର ଏତାଦୃଶ ପ୍ରତିଭାର ପରିଚୟ ପାଇ ମୁଗ୍ଧ ହୋଇଯାଇଥିଲେ । ସେ କହିଲେ— "ଭବିଷ୍ୟତରେ ଯୁବକ ଯଦୁମଣି ଏ ଖଣ୍ଡମଣ୍ଡଳରେ ଜଣେ ଖ୍ୟାତ-ନାମା କବି ବୋଲି ଯଶ ଅର୍ଜିପାରିବେ ।" ଯଦୁମଣିଙ୍କ କୃତିତ୍ୱରେ ରାଜା ମାନଧାତା ନିଜକୁ ଗୌରବାନ୍ୱିତ ମନେକରିବା ସ୍ୱାଭାବିକ । ରାଜା କବି ପଟ୍ଟନାୟକଙ୍କୁ ଉପଯୁକ୍ତ ପାରିତୋଷିକ ପ୍ରଦାନ କରି ବିଦାୟ ଦେଇଥିଲେ । କହିବା ବାହୁଲ୍ୟ—ଯଦୁମଣି ମଧ୍ୟ ମାନଧାତାଙ୍କଠାରୁ ପାରିତୋଷିକ ସ୍ୱରୂପ କେତେକ ଭୂସମ୍ପତ୍ତି ପାଇଥିଲେ । ରାଜ-ପରିଷଦରେ ଚତୁର ଯଦୁମଣିଙ୍କ ଯୋଗ୍ୟତା ଅନୁରୂପ ବିଶିଷ୍ଟ ଆସନ ମଧ୍ୟ ପାଇଲେ ।

ଏ ଘଟଣାର କିଛିଦିନ ପରେ ହରେକୃଷ୍ଣ ପଟ୍ଟନାୟକ ନାମକ ଜନୈକ କବି ନୟାଗଡ଼ ରାଜଧାନୀକୁ ଆସିଥିଲେ । ଦିନେ ରାଜସଭାରେ ଜଣେ ବେଶ୍ୟା ସଙ୍ଗୀତ ଓ ନୃତ୍ୟ ପରିବେଷଣରେ ଦର୍ଶକ ମଣ୍ଡଳୀଙ୍କ ଚିତ୍ତବିନୋଦନ କରୁଥିଲା । ସେହି ବେଶ୍ୟାର ବାଁ ହାତ ପାପୁଲି ହରିଗୌରିରଙ୍ଗରେ ରଞ୍ଜିତ ହୋଇଥିବାର ଦେଖି ରାଜା କବି ପଟ୍ଟନାୟକଙ୍କୁ କହିଲେ, "ଆପଣ ଏ ବେଶ୍ୟାର ହରିଗୌରୀ ରଞ୍ଜିତ ହସ୍ତକୁ ବର୍ଣ୍ଣନାକରି ଗୋଟିଏ କବିତା ବୋଲନ୍ତୁ ।" ପଟ୍ଟନାୟକେ କିଛି ସମୟ ଭାବିସାରି ନିଜର କବିତାଟି ସଭାସ୍ଥଳରେ ଶୁଣାଇଲେ ।

"କି ରଙ୍ଗରେ ହରଗଉରୀ ରଙ୍ଗରେ
ଅଙ୍ଗନା ବାମକରତଳ
ଚୋପି ଚୋପି କରିପରୁଛି ଅଛି ଯେ
ଦିଶୁଛି କେଡ଼େ ମଞ୍ଜୁଳ ।

[ଅଙ୍ଗାର].
କି ଅବା ଫୁଲଶରସୁର,
ବିନ୍ଧିବାବେଳରେ ନେତ୍ରେ ଆଡ଼ଦେଲ,
ତେଣୁ ଏ ରୁଧିର ବାହାର ।”

ଏ କବିତା ଶୁଣି ଯଦୁମଣି କହିଲେ—“ଏ ସେତେ ଭଲହେଲା ନାହିଁ ।” ରାଜା ଯଦୁମଣିଙ୍କୁ କହିବାରୁ ସେ ସଙ୍ଗେ ସଙ୍ଗେ ନିଜ ରଚିତ କବିତାଟି ସଭାରେ ଆବୃତ୍ତି କଲେ ।

“ମର୍ମଭେଦୀ ଯିନା କୁସୁମଶର
କାହିଁ ଉର, କାହିଁ ଭେଦିଲ କର;
ଏମନ୍ତ ଧିଷଣା ହୃଦୟେ ରଖି
ହରଗଉରୀ ଏକଠାବେ ଦେଖି
ବିନ୍ଧିଛୁ କି ମାର,
ତେଣୁକର ରକ୍ତ ବିନ୍ଦୁ ବାହାର ।”

ଯୁବକ ଯଦୁମଣିଙ୍କ ରଚନାରେ ବିଷୟବସ୍ତୁର ପ୍ରକାଶଭଙ୍ଗୀ, ପଟ୍ଟନାୟକଙ୍କ ରଚନାଠାରୁ ଉତ୍କୃଷ୍ଟତର, ଏଥିରେ ସଭାସଦ୍‌ମାନଙ୍କର ସନ୍ଦେହ ରହିଲା ନାହିଁ । ପଟ୍ଟନାୟକେ ନିଜ ରଚନାର ନୀରସତା ବୁଝିପାରି ଲଜ୍ଜିତ ହେଲେ ।

ଯଦୁମଣି କବିସୂର୍ଯ୍ୟ ବଳଦେବ ରଥଙ୍କ ସମସାମୟିକ ବ୍ୟକ୍ତି ଥିଲେ । ଏହିଠାରୁ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଭଞ୍ଜୀୟଯୁଗର ଅବସାନ ଘଟିଲା । ଭଞ୍ଜଙ୍କ ପରେ କବିସୂର୍ଯ୍ୟ ଉତ୍କଳ ବେଣୀ-ପୀଠରେ ଯେଉଁ ଅଭିନବ ଉପାୟନ ପରିବେଷଣ କରିଯାଇଛନ୍ତି,

ତା' ଅନନ୍ୟ ସାଧାରଣ । ପାଣ୍ଡିତ୍ୟ ଓ ସଙ୍ଗୀତ ରଚନାରେ ଉତ୍କଳରେ ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ କବି ଥିଲେ, ଏହା ଜଣାଶୁଣା କଥା । କବିସୂର୍ଯ୍ୟ ଥରେ ନୟାଗଡ଼ ରାଜା ମାନଧାତାଙ୍କ ନିମନ୍ତ୍ରଣ କ୍ରମେ ରାଜଧାନୀକୁ ଆସିଥିଲେ । ସେ ସମୟରେ ରାଜବାଟିର ମାନେଜର ଥିଲେ—ବଳୀଦେବତା ନାମକ ଜନୈକ ବ୍ରାହ୍ମଣ । ଦୁର୍ଗାପୂଜାରେ ବଳିଦାନ ପ୍ରଥା ସେ ଚଳାଇ ବହୁ ସଂଖ୍ୟକ ଛାଗବଳୀ ଦେବୀଙ୍କ ସମ୍ମୁଖରେ ଧରାଇବାର ବ୍ୟବସ୍ଥା କରିଥିଲେ । ଏପରି ନିରୀହ ପ୍ରାଣୀ ହତ୍ୟାରେ କବିସୂର୍ଯ୍ୟ ବ୍ୟଥିତ ହୋଇ ରାଜାଙ୍କୁ ନିନ୍ଦାକରିବା ଛଳରେ କହିଲେ—"କି କହିବା ନୃପ ମାନଧାତାଙ୍କୁ, ପାଳ କରିଛୁ ବଳୀ ଦେବତାଙ୍କୁ ।" ଆଶୁକବି ଯଦୁମଣି ରାଜାଙ୍କର ସମ୍ମାନରକ୍ଷା ତଥା ବଳୀଦେବତାର ଶାସ୍ତି-ବିଧାନ ପାଇଁ ନିଜ କବିତାରେ ସୂଚନା ଦେଇ କହିଲେ—

"ଯୋଡ଼ୁଏ ବିବେକ ମାନଧାତାର
ନୃପ ଚୂଡ଼ାମଣି ମାନଧାତାର,
ପାଳ କରିଛୁ 'ବଳୀଦେବତା'କୁ
ହୋଇଲେ ସିନା ବଳ ଦେବତାକୁ,
ଆଶ୍ୱିନମାସେ ବଳୀଦେବତାକୁ ।
କି ଅବିବେକରେ,
କଟାରି ଥୋଇଲେ ଅବି-ବେକରେ ।"

ଥରେ କବିସୂର୍ଯ୍ୟ କୌତୁକ କରିବା ପାଇଁ ଯଦୁମଣିଙ୍କ ନିକଟକୁ ଦୁଇଟି ପାଚିଲା ଆମ୍ବ ପଠାଇ ଲେଖିଥିଲେ—

"ଶୁଆ ଖିଆଗଲା; ସାରି ଖିଆଗଲା" ଏହାର ଅର୍ଥ—ଦୁଇଟି ଆମ୍ବ ମଧ୍ୟରୁ ଗୋଟିଏ ସ୍ୱାଦୁ ଓ ଅନ୍ୟଟି ବିସ୍ୱାଦ ବା ପାଣିଚିଆ ।

ଯଦୁମଣି ଆମ୍ବ ଦୁଇଟି କଥା ଲେଖାଇ ଦେଇ ସେହିକ୍ଷଣି ଉତ୍ତର ଦେଲେ—"ଦୁଇଟା ଆମ୍ବରେ ଦୁଇଟା କୁଆ, ଭିତରେ ଯୋଡ଼ିଏ କୋଇଲି ଥୁଆ ।" ଏହାର ଅର୍ଥ ହେଉଛି—ଆମ୍ବ ଦୁଇଟି ଶୁଆ ଆଦି ପରି ଉତ୍କୃଷ୍ଟ ନୁହେଁ, କୁଆ କୋଇଲି ପରି ଅତି ନିକୃଷ୍ଟ ଶ୍ରେଣୀର । ଉତ୍ତର ପାଇ କବିସୂର୍ଯ୍ୟ ଯଦୁମଣିଙ୍କ କବିପ୍ରତିଭା ଓ ବ୍ୟଙ୍ଗୋକ୍ତିର ସମ୍ୟକ ପରିଚୟ ପାଇ ଭବିଷ୍ୟତରେ ଯୁବକ ଯଦୁମଣି ମଧ୍ୟ ଉତ୍କଳୀୟ କବିସମାଜରେ ନିଜର ଆସନ ସୁପ୍ରତିଷ୍ଠିତ କରିପାରିବେ ବୋଲି କହିଥିଲେ । କବିସୂର୍ଯ୍ୟ ଓ ଯଦୁମଣି ଉଭୟେ ପୁରୀରେ ଜଗନ୍ନାଥଙ୍କ ଦର୍ଶନ ପାଇଁ ବଡ଼ଦେଉଳକୁ ଯାଉଥିଲେ । ପ୍ରଭୁଙ୍କୁ ଦର୍ଶନ କଲାବେଳେ କବିସୂର୍ଯ୍ୟ ଜଗନ୍ନାଥଙ୍କୁ 'ସର୍ପ'ରୂପେ ବର୍ଣ୍ଣନା କରି ଗୋଟିଏ ବ୍ୟଙ୍ଗକବିତା ଗାଇଲେ । ଯଦୁମଣି ପ୍ରଭୁଙ୍କୁ ଅପହାରୀ ଦାତାରୂପେ ବର୍ଣ୍ଣନା କରି ସ୍ତୁତି କରିଥିଲେ । କବିସୂର୍ଯ୍ୟ ଗ୍ରନ୍ଥାବଳୀରେ 'ସର୍ପ ଜଣାଣ' ଦ୍ରଷ୍ଟବ୍ୟ । ଯଦୁମଣିଙ୍କ ଅପହାରୀ କବିତାଟି ପାଠକେ ଦେଖନ୍ତୁ—

"ନୀଳାଚଳ କଳାକର ସତ କି ଏ ମିଛ ? ନେଲ ଯାହା ଦେଲ ତାହା,
ଏଥିକି କିପାଇଁ ମହାଦାତା ପଣେ ପତାକା ବାନ୍ଧିଛ ହେ,
ମହାପ୍ରଭୁ । ପଦ ।

ବଳି ବଳିଷ୍ଠ କଳିକ ଅକଳିତ ବିଭୂତିକି କଳିତ କରରେ କରିଥିଲ,
ନମାନି କରି ରମାକୁ ଅକିଞ୍ଚନ ସୁଦାମାକୁ ବିପୁଳ ସମ୍ପଦେ ମଣ୍ଡିଦେଲ
ହେ, ମହାପ୍ରଭୁ ।୧।

ଗୋକୁଳ କୁଳ-ଧଉତ ଗଉରାଙ୍ଗୀଙ୍କ ମହତ୍ତ୍ୱ ନେଇଥିବା ସକାଶରୁ କରି,
ବୃନ୍ଦ-ରାଜନନ୍ଦନା ମହତ୍ତ୍ୱ-ସମବେଦନା ବିନାଶନେ ହେଲ ଧନ୍ୱନ୍ତରୀ
ହେ, ମହାପ୍ରଭୁ ।୨।

ଓଜ ଶୀଳଭୂଜ ଗଜ ଜୀବନ ହରଣେ ଗଜ ଅର୍ପଣ କଲ କୃପଣ ନୋହି,
ଜଳଗ୍ରହଣେ କୁମ୍ଭୀର-ମଳଗ୍ରହଣେ କୁମ୍ଭୀର ରକ୍ଷା କଲ ସିନା କଷାବନ୍ତି
ହେ, ମହାପ୍ରଭୁ ।୩।

ପରମ ପାତକୀ ଶ୍ରେଣୀଶିରୋମଣି ଯଦୁମଣି ମନ ଭଲେ ନେଇ ନ ପାରୁଛ,
ଏବେ ଉଦ୍ଧରଣେ ଯେବେ କୃପା ବର୍ଷିଅଛ ଲବେ ତେବେ ସିନା ଦାମୀ
ବୋଲାଉଛ ହେ, ମହାପ୍ରଭୁ ।୪।

ଯଦୁମଣି ଓ କେତେକ ପଣ୍ଡିତଙ୍କ ସହ ରାଜା ନଗର ଭ୍ରମଣରେ ଯାଉ ଯାଉ ରାଜଦର୍ଶନ ପାଇଁ ଗୋଟିଏ ସୁନ୍ଦରୀ ଯୁବତୀ ଦାଣ୍ଡ ପିଣ୍ଡାରେ ଠିଆ ହୋଇଥିଲା । ଏ ଯୁବତୀଟିର ଦରଜୀକୁଳରେ ଜନ୍ମ । ଏହି ଯୁବତୀକୁ ଲକ୍ଷ୍ୟ କରି ଗୋଟିଏ କବିତା ବୋଲିବାକୁ ରାଜା ଯଦୁମଣିଙ୍କୁ କହିଲେ । ଯଦୁମଣି ସେହିକ୍ଷଣି କବିତାଟିଏ ଆବୃତ୍ତି କଲେ—

"ଦରଜୀକୁଳରେ ସରଜ ଅଛୁ ଯେ, ବଧୂସମତୁଲ ହାସ,
ମରଜ ବୁଝି ମୁଁ ଅରଜ ଦେବାକୁ ପାଉନାହିଁ ଅବକାଶ
ମଉଳ ପଛକେ ଯିବ,
ମଉଳ ନ ଥିବା ଜବାଅଧରକୁ ଅବେଗେ ତଳ ବରଜିବ ?"
(ମରଜ—ମନ, ଅରଜ—ଦରଖାସ୍ତ)

ଥରେ ଗୋଟିଏ ରୂପବତୀ ଯୁବତୀ ଦୁଆର ଏରୁଣ୍ଡିଉପରେ ଠିଆ ହୋଇଥିବାର ଦେଖି ରାଜା ଯଦୁମଣିଙ୍କୁ କହିଲେ—"ଯୁବତୀକୁ ଦେଖିଲ ?" ଯଦୁମଣି ସଙ୍ଗେ ସଙ୍ଗେ ଉତ୍ତର ଦେଲେ—

"ଦେଖିଲ ବାଳାକୁ ସେ ପ୍ରେମଶୀଳାକୁ ବଳା କଜ୍ଜ୍ବଳ କୁନ୍ତଳାକୁ,
ଲମ୍ବାଇ ଗଳାକୁ ସେ ମୋତିମାଳାକୁ ଗୁନ୍ଥିଣ ଥିଲି ଚପଳାକୁ
ବାଲା ଯେ, କରପଦ୍ମଦେଇ ଶିଳାକୁ
ନାସାର ଉପରେ ନଚ୍ଚ ଉଥିଲା ଗା ଚରଣ ବାଜେଣୀ ବଳାକୁ ।"
(ନାସା—ଏରୁଣ୍ଡିବନ୍ଧି)

ରାଜ ସଭାରେ ନୃତ୍ୟଗୀତି ପ୍ରଦର୍ଶନ କରିବା ପାଇଁ ଜଣେ ନର୍ତ୍ତକୀ ନୟାଗଡ଼କୁ ଆସିଥିଲେ । ତାଙ୍କ ନୃତ୍ୟଗୀତରେ ଦର୍ଶକମଣ୍ଡଳୀ ମୁଗ୍ଧ ହୋଇଯାଇଥିଲେ । ନର୍ତ୍ତକୀ ସଭାରୁ ବିଦାୟ ନେଲି ପରେ ଭଙ୍ଗି, ରୂପ, ପ୍ରସାଧାନର ଆଲୋଚନା କଲେ— ରାଜପରିଷଦବର୍ଗ ଜନୈକ ପଣ୍ଡିତ କବିତା ଆକାରରେ କବିତାର ଗୋଟିଏ ଚରଣ ରଚନା କରି କହିଲେ—

"କସ ଭାବ ବନ୍ଧୁ, ଚମ୍ପାଫୁଲେ ଦେଲି କଜ୍ଜ୍ବଳ ବିନ୍ଦୁ ।"

ଯଦୁମଣି ସଙ୍ଗେ ସଙ୍ଗେ ପାଦପୂରଣ କଲେ—

"ରାକା ପୂର୍ଣ୍ଣିମୁଖୀ ବିଗ୍ରହରେ ମନ,
ଭ୍ରମର ଏ ପୁଷ୍ପ ନ କରେ ପାନ,
ଚନ୍ଦ୍ରଲସ୍ତନା ଏମନ୍ତ ବିଗ୍ରହରେ
ଦେଖିବା ତ ଦେଖି କି ଶୋଭାଧରେ,
ଏହାଭାବ ବନ୍ଧୁ
ଚମ୍ପାଫୁଲେ ଦେଲି କଜ୍ଜ୍ବଳ ବିନ୍ଦୁ ।"

ଯଦୁମଣି ଥରେ ଖଣ୍ଡପଡ଼ା ରାଜାଙ୍କ ନିମନ୍ତ୍ରଣରେ ଖଣ୍ଡପଡ଼ା ଯାଇଥିଲେ । ସେ ସମୟରେ ଖଣ୍ଡପଡ଼ାର ରାଜା ଥିଲେ—

କୁଞ୍ଜବିହାରୀ ସିଂହ ମର୍ଦ୍ଦରାଜ ସିଂହ୍ । ରାଜାଙ୍କ ବ୍ୟବହୃତ କାଷ୍ଠ-ପାଦୁକାର ଚୁଡ଼ୀ ହାତୀଦାନ୍ତରେ ତିଆରି ହୋଇଥିଲା । ସେହି ଚୁଡ଼ୀ ଯୋଡ଼ିକ କାରୁକାର୍ଯ୍ୟପୂର୍ଣ୍ଣ ହୋଇ ଅତି ସୁନ୍ଦର ଦିଶୁଥିଲା । ଯଦୁମଣି ସେହି ଚୁଡ଼ୀର ସୂକ୍ଷ୍ମ କାରୁକାର୍ଯ୍ୟକୁ ଅଭିନିବେଶ ସହକାରେ ଦେଖୁଥିବାର ଦେଖି, ରାଜା ଯଦୁମଣିକୁ ପଚାରିଲେ— "ଯଦୁମଣି. ତୁମେ କଅଣ ଏକାଗ୍ରରେ ଦେଖୁଛ ?" ଯଦୁମଣି ଉତ୍ତର ଦେଲେ, କବିତାରେ—

"ମାଳମାଧବ-ମାଳୟ୍-ଧାରୀ ଧରା କ୍ଷତ୍ରୀକୁଳ କମଳାଙ୍କ
କୁଞ୍ଜବିହାରୀ କୁଞ୍ଜରାଜ ଶ୍ରୀ ମର୍ଦ୍ଦରାଜ ଭ୍ରମରଙ୍କ
ପଦାବ୍ଜଧାମ ରମ୍ୟ ରମା-ହାରକ-ତାଟଙ୍କ ଶଙ୍କାଅଙ୍କୁରାଏ ଏପାଦୁକା ।"

ଅର୍ଥାତ୍—ମାଳମାଧବଙ୍କ ଅଧିଷ୍ଠାନ ସ୍ଥଳ ଖଣ୍ଡପଡ଼ା ରାଜ୍ୟର ରାଜା ଶ୍ରୀ କୁଞ୍ଜବିହାରୀଙ୍କ ହାତୀଦାନ୍ତ ତିଆରି କଠଉ ଚୁଡ଼ୀ ଯୋଡ଼ିକ ଲକ୍ଷ୍ମୀଦେବୀଙ୍କ ହୀରକ ତାଟଙ୍କ (କାନଫୁଲ) ପରି ସନ୍ଦେହ ଜନ୍ମାଉଛି ।

ହାତୀଦାନ୍ତ ଅଳଙ୍କାରକୁ କାଳେ କେହି ଅପସନ୍ଦ କରିପାରେ, ସେଥିପାଇଁ ହାତୀଦାନ୍ତର ଗୌରବ ବର୍ଣ୍ଣନା କରି କହିଲେ—

"ଭୂଷଣ ପ୍ରଶସ୍ତି ଦନ୍ତୀଦନ୍ତେ ନାସ୍ତି ଋସ୍ତିବ ବା ଅଙ୍ଗ ଅବଙ୍କା
କନକ କୁଳିଶ, ମାନଗଜନ୍ତ ପ୍ରବାଳ ପଞ୍ଚରତ୍ନ ସଙ୍ଖ୍ୟା"
(ପଞ୍ଚରତ୍ନ ମଧ୍ୟରେ ଗଜଦନ୍ତର ସ୍ଥାନ ଅଛି)

ପୁଣି ରାଜସଭାକୁ ଯଦୁମଣି ବହୁଥର ଆସିଥିଲେ । ନିଜର ବାହାଦୁରୀ କବିତାରେ ଦେଖାଇ ପ୍ରଶଂସାର୍ହ ହୋଇଥିଲେ । ସେ

କେତେଗୁଡ଼ିଏ କବିତାରେ ଜଗନ୍ନାଥଙ୍କୁ ସ୍ତୁତି କରି କେତୋଟି ଜଣାଣ ଲେଖିଥିଲେ । ଇଭଙ୍କର ଜଗନ୍ନାଥଙ୍କଠାରେ କପଟ ଭକ୍ତି, ତା' ଏଇ କବିତାରେ ସ୍ପଷ୍ଟ । ତା ଛଡ଼ା ଭାବ ପ୍ରକାଶର ଭଙ୍ଗି ପାଠକେ ଦେଖନ୍ତୁ ।

"ମାନସ, ଚକାନୟନଙ୍କୁ ଡକା,
ନାଳିକ ବନ୍ଧୁଜ ନାଲି ନେତ୍ର ତେଜ
କରାଇ ପାରନ୍ତି ଫିକା (ପଦ) ।
ଯାହା ବନେ ଭୂଜ ପଡ଼ି ଗୃହଭୂଜେ
ବଳେ ବାହ୍ଲୀରେ ବସିଲେ ଜକା
ଦର୍ଶନ ମାତ୍ରକେ ସେ ଅଘ ଲଙ୍ଘନ
ମଘବାର ଜକା । ୧ ।
ପଣ୍ଡିତସଂଘକେ ଦୃଷ୍ଟିପଣ ସର୍ଜି କେ
ମୃଷ୍ଟି ଯେଉଁ ଷଣ୍ଢାବକା,
ଯୁଗଳ ବଧାରେ ସର୍ଦ୍ଧ ବର୍ଜିଦେଲେ
ଅର୍ଜିତ ଦୁର୍ଜନ ଦକା । ୨ ।
ବାଜା ବଜା ପାପୀ ରାଜା ଅଜାମିଳ
ପୁତ୍ରକୁ ପାଶରେ ଡକା,
ଗରିଷ୍ଠ ନଷ୍ଟ ଦୂରିତ ପାପିଷ୍ଠଙ୍କୁ
ଭୁଶରେ ମାଇଲେ ଧକ୍କା । ୩ ।
ନନ୍ଦା ସ୍ତୁତି ଭକ୍ତ ଯେଣେ ମୁକ୍ତିଦେବା
ଶକ୍ତିମନ୍ତେ ଜଣ ପକ୍କା,
ତେବେ ରାଜପୁତ୍ର ନଧାଜ ପବିତ୍ର
ପାତ୍ରକୁ ଯେ କଲେ ଏକା । ୪ ।

ଯଦୁମଣି ଭଣେ କଳିକର୍ମ ଗୁଣେ
ରଖିବେ ନାହିଁ କଉଡ଼ିକା,
ନୀଳାଚଳ ଚୂଳେ ନୀଳଚକ୍ର ତଳେ
ପାପୀ ପାବନ-ପତାକା । ୫ ।

ଥରେ ଯଦୁମଣି ଦଶପଲ୍ଲା ରାଜ୍ୟକୁ ଯାଇଥିଲେ । ସେଠାରେ ରାଜାଙ୍କ ଆତିଥ୍ୟରେ ବ୍ୟଥିତ ହୋଇ ରାଜାଙ୍କୁ ସେ କଥା ଜଣାଇବା ପାଇଁ ସୁଯୋଗ ଖୋଜୁଥିଲେ । ଦୈବାତ୍ ରାଜାଙ୍କ ଗହଣରେ ଜଗନ୍ନାଥଙ୍କ ଦର୍ଶନର ସୁବିଧା ମିଳିଲା । ଦର୍ଶନ ସମୟରେ ବ୍ୟଙ୍ଗୋକ୍ତି ପୂର୍ଣ୍ଣ କବିତାରେ ଜଗନ୍ନାଥଙ୍କୁ "ସ୍ତବ" କରିବାରେ ଲାଗିଲେ ।

"କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ,
ରଥ ବୋଲି ଭିଡ଼ିଦେବେ ଶଗଡ଼େ ବସାଇ,
ଭୋଗ ବୋଲି ଖଞ୍ଜିଦେବେ କଡ଼କଥା ମୁଆଁ,
ଧୂପ ବୋଲି ମାଡ଼ିଦେବେ ନଆଁ ଖୁଣ୍ଟା ଧୂଆଁ ।"

ଦଶପଲ୍ଲାର ରାଜଧାନୀ କୁଞ୍ଜବନ । ଏଠାରେ ରାଜପୂଜ୍ୟ ଦେବତାଙ୍କର ମଧ୍ୟ ସେବା ପୂଜାରେ ଯଥେଷ୍ଟ ତ୍ରୁଟି ଘଟିବ । ଅର୍ଥାତ୍ ଯୋଗ୍ୟ ଓ ପୂଜ୍ୟ ବ୍ୟକ୍ତିଙ୍କୁ ଉପଯୁକ୍ତ ସମ୍ମାନ ଦିଆଯାଏ ନାହିଁ । ଏହା ହିଁ ଏହି କବିତାର ଗୂଢ଼ଅର୍ଥ । ଯଦୁମଣିଙ୍କର ଏ କବିତା ଶୁଣି ରାଜା ବୁଝିଲେ, ଯଦୁମଣି ତାଙ୍କ ଆତିଥ୍ୟରେ ଅସନ୍ତୁଷ୍ଟ । ଯଦୁମଣିଙ୍କ କବିତା ଗୁରୁଗିରିର ପ୍ରଶଂସା କରି ଯଦୁମଣିଙ୍କ ଯଥାଯୋଗ୍ୟ ସମ୍ମାନ ଦେଖାଇବାରେ ତ୍ରୁଟି କରି ନ ଥିଲେ ।

କବି ଜଣେ ସ୍ପଷ୍ଟବାଦୀ ବୋଲି ସମସ୍ତେ ଜାଣନ୍ତି । ଏହି ସ୍ପଷ୍ଟବାଦୀତା ଯୋଗୁଁ ସେ ରାଜା ବା ରାଜପୁରୁଷମାନଙ୍କ ବିଷ ଦୃଷ୍ଟିରେ ପଡ଼ୁଥିଲେ । ତଥାପି ବୁଦ୍ଧିଜୀବୀ ଯଦୁମଣି କୌଶଳ କ୍ରମେ ସେମାନଙ୍କର ପ୍ରୀତିପାତ୍ର ହେଉଥିଲେ । ପୂର୍ବେ କୁହାଯାଇଛି—ଯଦୁମଣି ନିଜ କୌଳିକ ବୃତ୍ତି ବିଗ୍ରହ ଖୋଦନ ବିଦ୍ୟା ଉତ୍ତମରୂପେ ଜାଣିଥିଲେ । ନିଜେ ଗୋଟିଏ ଅତି ସୁନ୍ଦର ଶ୍ରୀକୃଷ୍ଣମୂର୍ତ୍ତି ନିର୍ମାଣ କରି ରଣପୁର ରାଜାଙ୍କ ପାଖକୁ ଗଲେ । ସେହି ମୂର୍ତ୍ତିରେ ବହୁପ୍ରସ୍ଥ ପାଟକନା ଗୁଡ଼ାଇ ରାଜାଙ୍କ ସମ୍ମୁଖରେ ଭେଟିଦେଲେ । ରାଜା ମୂର୍ତ୍ତି ଦେଖିବାକୁ ଗୁଡ଼ାହୋଇଥିବା ପାଟକନା ଫିଟାଇ ଫିଟାଇ ମୂର୍ତ୍ତିଟି ଦେଖି ନ ପାରି ବିରକ୍ତିରେ ତଳେ ଥୋଇଦେଲେ । ଦେବବିଗ୍ରହ ପ୍ରତି ରାଜାଙ୍କର ଅନାଦର ଦେଖି ଆଶୁକବି ଯଦୁମଣି କହିଲେ—

"ଅନ୍ଧଦେଶକୁ ଗଲି ଦର୍ପଣ ବିକି
କନ୍ଧହାତରେ ଦେଲି ଗୋଦାନ ଟେକି,
ଜଡ଼ା ମଧ୍ୟରେ କଲି ଖଡ଼ା ରନ୍ଧନ,
କାମୁଡ଼ା ଘୋଡ଼ାମୁଖେ ଦେଲି ଚୁମ୍ବନ,
ହେ ରାଜା କି କଲି,
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲି ।

ଏଥିରେ ରାଜା ଅପ୍ରତିଭ ହୋଇପଡ଼ିଲେ । ପରେ ପାଟକନା ପ୍ରସ୍ଥକୁ ଅତି ସାବଧାନରେ ଫିଟାଇ ମନୋହର କୃଷ୍ଣମୂର୍ତ୍ତି ଦେଖି ଆପ୍ୟାୟିତ ହେଲେ । ପରେ ଯଦୁମଣି ରାଜାଙ୍କଠାରୁ ଉପଯୁକ୍ତ ଭାବରେ ପୁରସ୍କୃତ ହୋଇଥିଲେ ।

ଆଉଥରେ ଯଦୁମଣି ଖଣ୍ଡପଡ଼ା ଯାଇଥିଲେ । ଆତିଥ୍ୟରେ ଯେପରି କୌଣସି ପ୍ରକାର ତ୍ରୁଟି ନ ଘଟେ, ସେଥିପ୍ରତି ତାଙ୍କ ଚର୍ଚ୍ଚିବେହେରାଙ୍କୁ କଡ଼ା ଆଦେଶ ଦିଆଯାଇଥିଲେ ମଧ୍ୟ ଉକ୍ତ ବେହେରା ରାତିରେ ଜଳଖିଆ କରିବା ପାଇଁ ଯଦୁମଣିଙ୍କ ପାଖକୁ ଠାକୁର ଭୋଗ 'କାନ୍ତମୁଆଁ' ଗୁଡ଼ିଏ ପଠାଇ ଦେଲା । କାନ୍ତମୁଆଁ ଅତି ନିକୃଷ୍ଟ ଧରଣର ମୁଆଁ । ରାତିରେ ଭୋଜନର ଅନ୍ୟ ବ୍ୟବସ୍ଥାର ସମ୍ଭାବନା ନ ଦେଖି, କବି ଯେନତେନ ପ୍ରକାରେ ସେ ସବୁ ଉଦରସ୍ଥ କରିବାକୁ ବାଧ୍ୟହେଲେ । ତା' ଆରଦିନ ସକାଳେ ରାଜାଙ୍କ ସଙ୍ଗେ ଦେଖା ହେଲାବେଳେ ଚର୍ଚ୍ଚିବେହେରାର ଆତିଥ୍ୟ ବର୍ଣ୍ଣନା କରି କବିତାଟିଏ ରାଜାଙ୍କୁ ଶୁଣାଇଲେ—

"କାନ୍ତ-କାନ୍ତ ଦେଖି ମନେ ହେଲା ଭ୍ରାନ୍ତ କେମନ୍ତେ କରିବି ଆହାର,
ଖଣ୍ଡପଡ଼ା ନାମ ତୁଣ୍ଡେ ଉଚ୍ଚାରନ୍ତେ ତକ୍ଷଣେ ହୋଇଲା ମଧୁର,
ଚରଗୁ ବେହରା ଖରଗୁ ନ ଦେଇ ଫରଗୁ ହୋଇଣ ଗଲା,
ଉପବାସୀ ଉପବାସେ ରହିରହି ନିଶି ତାର ନ ପାଇଲା ।"

(ଏଠାରେ ଉପବାସୀର ଅର୍ଥ ପ୍ରବାସୀ ବା ଆଗନ୍ତୁକ)

କବିଙ୍କ ବ୍ୟଙ୍ଗକବିତାରେ ରାଜା ଲଜ୍ଜିତ ହେଲେ । ଚରଗୁ ବେହେରାକୁ ଉପଯୁକ୍ତ ଶାସ୍ତି ମିଳିଲା ।

କବି ଯଦୁମଣିଙ୍କୁ ଖଣ୍ଡିଏ ଭୂସମ୍ପତ୍ତି ଦେବାପାଇଁ ରାଜ-କଚେରିର ବେବର୍ତ୍ତାଙ୍କୁ ରାଜା ମାନଧାତା ଆଦେଶ ଦେଲେ । କରଣ ବେବର୍ତ୍ତା ଠିକ୍ ସମୟରେ ଉପଯୁକ୍ତ ଜମି ନ ଦେଇ ବରଷେ

ବଢାଇଦେଲେ । ପରେ ବାଛି ବାଛି ଖଣ୍ଡିଏ ନିରସା ଜମି ଯଦୁମଣିଙ୍କୁ ଦେଲେ । ଯଦୁମଣି ଏଥିରେ ଅସନ୍ତୁଷ୍ଟ ହୋଇ ବ୍ୟଙ୍ଗକବିତାରେ ରାଜାଙ୍କୁ ଜଣାଇଲେ ।

"ଦେଉଁ ଆଜ୍ଞା ହେଲେ ହରଷେ
କିରଣ ତା କଲେ ବରଷେ ।
ବାଛି ବାଛି କରି ଦେଲେ ପଡ଼ିଆ,
ଶ୍ରାବଣ ମାସରେ ଘରେ ନଡ଼ିଆ ।
ଏମନ୍ତ ଭୂଇଁ,
ଟିକ୍କଣ୍ଡା ବୁଣିଲେ ଉଠଇ ନାହିଁ ।"

ଏପରି ବ୍ୟଙ୍ଗକବିତାର ପୁରସ୍କାର ସ୍ୱରୂପ କବି ପାଇଥିଲେ—ଅତି ଉତ୍କୃଷ୍ଟ ଭୂସମ୍ପତ୍ତି । ବେବର୍ତ୍ତା ଯାହା ପାଇଥିବେ, ସହଜେ ଅନୁମେୟ ।

ନୟାଗଡ଼ ଜଗନ୍ନାଥଜୀଉଙ୍କ ଦେବୋତ୍ତର ଜମିରୁ କେତେକ ଜମି ରଇତ ହୋଇ ଚଷୁଥିଲେ ଯଦୁମଣି । ଜମି ସେତେ ଉତ୍କୃଷ୍ଟ ଧରଣ ନ ଥିଲା । କିନ୍ତୁ ଜମି ଅନୁପାତରେ ଖଜଣାହାର ବେଶି ଥିଲା । କବିଙ୍କ ଆର୍ଥିକ ପରିସ୍ଥିତି ହେଉ ଅବା ଅନ୍ୟ କୌଣସି ହେତୁରୁ ବାର୍ଷିକଖଜଣା ଦାଖଲ କରି ନ ପାରିବାରୁ ଚମ୍ପାଉ ପଟ୍ଟନାୟକ (ଖଜଣା ଅସୁଲକାରୀ) ଯଦୁମଣିଙ୍କୁ ଘରି ହଇରାଣ କଲେ । ଏଥିରେ ବ୍ୟଙ୍ଗକବି ଯଦୁମଣି ନିଜକୁ ଲାଞ୍ଛିତ ଓ ଅବମାନିତ ମନେକରି ଚମ୍ପାଉ ପଟ୍ଟନାୟକ ଦୁର୍ବ୍ୟବହାରର ତୀବ୍ର ପ୍ରତିବାଦ ସ୍ୱରୂପ ଗୋଟିଏ କବିତା ଲେଖି ରାଜାଙ୍କ ପାଖକୁ ପଠାଇ ଦେଲେ । ତା' ଏଇ—

"ଜମିର ମାଲିକ ଜଗାବଳିଆ, ତାଙ୍କ ସିଂ ଅଟେ କାଳିଆ,
ଜମି ଥଳମଳ କସ ବାହୁନିବା ଯେସନ ଝାଉଁଷି ଗୋଠଗୁଳିଆ ।୧।

ଜମିର ଆକାର ଅଟଇ ଡମ୍ବୁ, ତାହିଁ ନିରନ୍ତର ଝୋଟିଏ ଅମ୍ବୁ,
ଗୁରପଟ ବଳ ଶକଡ-ଆକାର, ମୋ ବଳଖଣ୍ଡି ଅଟଇ ଶମ୍ବୁ ।୨।

ପାଞ୍ଚ କିଆରି ପାଞ୍ଚବନ୍ଧନ, ହୁଡ଼ହାଣ୍ଡି ମେଳ ତାହିଁ ଶୋଭନ,
ପ୍ରତି କିଆରିରେ ତିନି ତିନିଖାତ, ସେ ଅଟେ ବଣ-ପଞ୍ଚଲୋଚନ ।୩।

ମାଲୀ ତାହିଁ କି ଡାହୁକା ନଇ, ବୃଷ୍ଟି ହେଲେ କରେ ସେ ଜଳଖାଇ
କର୍ପୂରଚନ୍ଦନ ଗୋଳି ଦେଉଥାଇ, ଚଟ୍ଟ ପଟ୍ଟ ଆଳିକି ଦେଇ ।୪।

କସ କହିବ ହେ ତ୍ୟାଗ ପଟ୍ଟନାୟକେ ଶୁଣ,
ଭିଆଉ ଭିଆଜ ଦିଆଉ ଅଛ ହେ ଏତେ କଷଣ । ୫ ।

କଂସା ବିକି ଟଙ୍କ ଦେବାକୁ, ମୋର ଚିତ୍ତ ବଳିଲା,
ପିଲାଏ ବୋଇଲେ, ଆମ୍ଭର ଏବେ ସବୁ ସରିଲା । ୬ ।

ଭାତ ସିନା ଏବେ ଖାଇବା ତଳେ ପତରପାଡ଼ି,
ଟେଣ୍ଟାଣି କେମନ୍ତେ ପିଇବା, ତଳେ ମୁହଁକୁ ମାଡ଼ି । ୭ ।

ଟପାଡ଼ା କପାଳକୁ ଦୁବଳ ବଣା, ଜାଗର ପ୍ରଥର କୁଣ୍ଡି ମୋ କଂସା,
ଗରା ବୋଳିବାକୁ ଭଙ୍ଗା ମାଠିଆ; ରୂପା ଦୂର୍ଗା ଖଜା ବଡ଼ା ଚାଟିଆ,
ଘରେ ନାହିଁ କଟୁ, ବୁଢ଼ୀ ହୋଇନାହିଁ ମାଇପ ଅଛୁ । ୮ ।

ଏଇ କବିତା ବଳରେ ଚତୁର କବି ଯଦୁମଣି ରାଜା ଓ ରାଜ ପରିଷଦ୍‌ବର୍ଗଙ୍କୁ ପ୍ରଭାବିତ କରି ଉକ୍ତ ଭୂସଂ ପତ୍ତିକୁ ନିଷ୍କର ଜାଗିର ରୂପେ ପାଇଥିଲେ ।

କବିଙ୍କ ସ୍ପଷ୍ଟ କବିତ୍ୱର ଆଉ ଗୋଟିଏ ଉଦାହରଣ ଦେଖାଯାଉ । ଘଟଣା ହୀମ ମାନଧାତାଙ୍କ କୁବ୍ୟବହାରରେ କବି ଅସନ୍ତୁଷ୍ଟ ହୋଇ କହିଥିଲେ :

"ନବ ନିର୍ଗବାଣ, ଇଷ୍ଟ ଦେବତା ପର ଆଚରଣ ।"

ନୟାଗଡ଼ ରାଜାଙ୍କର ଇଷ୍ଟ ଦେବତାଙ୍କ ନାମ 'ବାଉରାଣୀ' । କବିତାଟିରୁ ଏମନ ଇଙ୍ଗିତ କଲାରେ ଅନ୍ୟକୁ କପଟ ଆଘାତ ଦିଆଯାଇ ପାରେ, ଏହାର ଉଦାହରଣ ପଦୁମଣିଙ୍କ ବ୍ୟଙ୍ଗ କବିତା ।

ଶ୍ରୀପଞ୍ଚମୀ ଦିନ ସରସ୍ୱତୀ ପୂଜା ସାରି ଚାଟଶାଳୀର ଚାଟମାନେ ଚିତ୍ରିତ ନାରିକେଳ ଧରି "ବନ୍ଦେଇ ହରି, ଦେବ ମୁରାରି" ପ୍ରଭୃତି ଗୀତ ଗାଇ ଦୁଆର ଦୁଆର ବୁଲନ୍ତି । ଯାହାକ ବାଜ ପାଆନ୍ତି, ସେତକ ପ୍ରାପ୍ୟ ଚାଟଶାଳୀ ଅବଧାନଙ୍କର । ଏଇ ପୂର୍ବ ପ୍ରଥା ଆଜି ମଧ୍ୟ ଓଡ଼ିଶାରୁ ଲୋପ ପାଇନାହିଁ । ଲୋପ ପାଇବାକୁ ଆଉ ବେଶୀ ଦିନ ଲାଗିବ ନାହିଁ । ଗାଆଁ ଗାଆଁରେ ପ୍ରାଇମେରୀ ସ୍କୁଲ ପ୍ରତିଷ୍ଠା ଯୋଗୁଁ ପଦୁମଣିଙ୍କ ପୁଅ ସରସ୍ୱତୀ ପୂଜା ପରେ ରାଜ ନବରକୁ ଯାଇ, ଗୀତ ଗାଇ ବିଦାକ ସ୍ୱରୂପ ପାଞ୍ଚଟଙ୍କା ପାଇବାକୁ ରାଜା ପାଜ (ମାନେଜର)ଙ୍କ ପାଖକୁ ବବଦ କଲେ । ପାନେ ପାଞ୍ଚଟଙ୍କା ଦେବା ପାଇଁ ହାଡ଼ି ପରୀକ୍ଷାଙ୍କ ପାଖକୁ ଲେଖିଲେ । ହାଡ଼ି ପରୀକ୍ଷା ରାଜାଙ୍କ ପ୍ରତିଶ୍ରୁତ ଟଙ୍କା ନଦେଇ ଟାଳ ଟୁଳ କରିବାରେ ଲାଗିଲେ । ପଦୁମଣି ପରୀକ୍ଷାଙ୍କ ଆଚରଣରେ କ୍ଷୁବ୍ଧ ହୋଇ ରାଜାଙ୍କ ଛାମୁକୁ ଗୋଟିଏ ଟାଣୁଆ ବ୍ୟଙ୍ଗ କବିତା ଲେଖି ପଠାଇଲେ ।

"ଦିନ ପାବରେକ ପାଶା
ନଷ୍ଟ ମିଲ୍‌ଙ୍କର ଭାଷା
ମାନଙ୍କ ମନ୍ତ୍ରରେ ମନ୍ତ୍ର ଦ୍ୱାରା ... ଗୁଣ୍ଡରେ ହାଣ୍ଡି ପରୀକ୍ଷା ।"

କବି ପଦ୍ମମଣି କେବଳ କବି, ସମାଲୋଚକ ଓ ସ୍ପଷ୍ଟବାଦୀ ଥିଲେ, ଏହାର ଅନ୍ୟ ଏକ ଉଦାହରଣ ଦିଆଯାଉଛି । ରାଜା ଲକ୍ଷ୍ମଣ ସିଂହ ମାନଧାତାଙ୍କ ଅମଳରେ ନୟାଗଡ଼ରେ ପ୍ରଜାମେଳି ହୋଇଥିଲା । ପ୍ରଜାମେଳି ଦମନ ପରେ "ତତ୍କାଳୀନ କମିଶନର୍ ସାହେବ ମେଳିର କାରଣ ଅନୁସନ୍ଧାନ ପାଇଁ ଜଣେ ବଡ଼ ପାହ୍ୟା ଅଫିସରଙ୍କୁ ନୟାଗଡ଼ ପଠାଇଲେ । ଏହି ଅଫିସରଙ୍କ ନାମ ହେଉଛି—ହରମୋହନ ଲାଲ୍ । ଏହି ଅଫିସରଙ୍କ ଆଗରେ ସ୍ପଷ୍ଟବାଦୀ କବି ପଦ୍ମମଣି ବ୍ୟଙ୍ଗ କବିତାରେ ସାକ୍ଷ୍ୟ ଦେଇଥିଲେ ।

ତାହା ଏଇ :—

"ଗୋଡ଼ ଗାଡ଼ ସଂସର୍ଗରେ ଯେ ପଶୁ,
ତାଙ୍କର ସୁନାଖଡ଼ୁ ତନୁ ପଶୁ
ଅଶୁଭରେ ଶୁଭ ହୋଇଲା ଦେଖା,
ତାଙ୍କର ଆଣ୍ଡେଣୀ ପାଲଙ୍କି ଛଡା ।
ଏହା ସକାଶରୁ ଜାଣ ଯେ,
ଛନ୍ଦାକର ଲଙ୍ଗ ଉଦ୍‌ଭବ ମେଦନୀ ହୋଇଗଲା ହରିଣୀଶା ।

ଏହାର ଅର୍ଥ—ଯେଉଁମାନଙ୍କର ଗୋଡ଼ ଗାଡ଼ ଭିତରେ ପଶିଥାଏ ବା ଯେଉଁମାନେ ହନସାକ ଗାଡ଼ରେ ଗୋଡ଼ ପୂରାଇ ଲୁଗା ବୁଣୁଥିଲେ; ସେଇ ତନ୍ତୀମାନେ ସୁନାଖଡ଼ୁ ପିନ୍ଧିଲେ,

ଘୋଡା ଚଢ଼ିଲେ, ଫାଟ ଲୁଗା ବ୍ୟବହାର କଲେ । ଅନୁକୂଳ କରିଯିବା ବେଳେ ଛେନ୍ତ ଦେଖିଲେ ଅଶୁଭ ବା ଅମଙ୍ଗଳ ହୁଏ ବୋଲି ଲୋକ ବିଶ୍ୱାସ । ସ୍ନେହ ଛେଳମାନେ ରାଜାଙ୍କ ଅନୁଗ୍ରହରୁ ଆଡ୍ରେଣୀ, ଟାଲିକି ପ୍ରଭୃତି ଶୁଭ ସୂଚକ ଦ୍ରବ୍ୟ ବ୍ୟବହାର କରିବାରୁ ଅର୍ଥାତ୍ ନୀଚ ଜାତୀୟ ଲୋକ ରାଜ ଅନୁଗ୍ରହରୁ ଉଚ୍ଚସ୍ଥାନ ପାଇଲେ । ସମ୍ଭ୍ରାନ୍ତ ବଂଶୀୟ ଲୋକଙ୍କର ମାନ ମର୍ଯ୍ୟାଦାରେ ଆଞ୍ଚ ଆସିଲା । ତେଣୁ ସ୍ୱୟଂଭୂ ଲକ୍ଷ୍ମୀକଣ୍ଠ ଶିବଙ୍କ ଅଧିଷ୍ଠାନ ସ୍ଥଳ ସେହି ନବଦୁର୍ଗ (ନୟାଗଡ଼) ଦମନ ଲୀଳାରେ ନାଟଶାଳ ହେଲା । ଏଭଳି ନିର୍ଭୀକ ଭାବରେ ନିରାଟ ସତ୍ୟ ପ୍ରକାଶ କରିବା କେବଳ ଯଦୁମଣିଙ୍କ ପକ୍ଷରେ ସମ୍ଭବ ଥିଲା ।

ଏହା ଛଡ଼ା ରସିକ ଯଦୁମଣିଙ୍କର ଭଣ୍ଡାମି କହିଁ ଊଣା ନଥିଲା । ନୟାଗଡ଼ର ରାଜମାତା ମୃତ୍ୟୁ ପୂର୍ବରୁ ପାଚିଲା ଆମ୍ବ ଖାଇବାକୁ ଅଭିଳାଷ କରିଥିଲେ । କିନ୍ତୁ ସେ ସମୟରେ ପାଚିଲା ଆମ୍ବ ଦୁଷ୍ପ୍ରାପ୍ୟ ଥିବାରୁ ରାଜମାତାଙ୍କ ଅଭିଳାଷ ପୂରଣ ହୋଇ-ନ ଥିଲା । ମାତାଙ୍କ ଶେଷ ଇଚ୍ଛା ପୂରଣ କରି ନ ପାରି ରାଜା ବିଷଣ୍ଣ ହେଲେ । ବ୍ରାହ୍ମଣ ପଣ୍ଡିତମାନେ ରାଜାଙ୍କୁ ପ୍ରସ୍ତାବ ଦେଲେ ଯେ ରାଜମାତାଙ୍କ ଶ୍ରାଦ୍ଧ ଦିବସରେ ଅଷ୍ଟୋତ୍ତରଶତ (୧୦୮) ସ୍ୱର୍ଣ୍ଣ ନିର୍ମିତ ଆମ୍ର (କଷିଆମ୍ବ) ବ୍ରାହ୍ମଣମାନଙ୍କୁ ଦାନ କଲେ, ସ୍ୱର୍ଗତ ରାଜମାତା ପରମତୃପ୍ତି ଲାଭ କରିବେ । ସେଇୟା ହେଲା । ଅର୍ଥଗୃଧ୍ନୁ ବ୍ରାହ୍ମଣଙ୍କର ଏବଂବିଧ ଆଚରଣ ଦେଖି ଧୂର୍ତ୍ତ ଯଦୁମଣି ମନେ ମନେ ଚାହିଁଲେ—ଏମାନଙ୍କୁ ଯଥୋଚିତ ଉପଯୁକ୍ତ ଶିକ୍ଷାଦେବା ଉଚିତ ।

ଯଦୁମଣି ମାତାଙ୍କ ଶ୍ରାଦ୍ଧ ଦିବସରେ ସେଇ ୧୦୮ ଜଣ ପଣ୍ଡିତଙ୍କୁ ନିମନ୍ତ୍ରଣ କଲେ । ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟରେ

ବ୍ରାହ୍ମଣ ପଣ୍ଡିତମାନଙ୍କ ଭଳି ବାହ୍ୟାଦିରେ ଯଦୁମଣି କଣ୍ଠ ମାତ୍ର ସ୍ତୁତି କରି ନ ଥିଲେ । ଭୋଜନ ଶେଷରେ ଯଦୁମଣି ଅତି ବିନୀତ ଭାବରେ କରଯୋଡ଼ି ବ୍ରାହ୍ମଣମାନଙ୍କୁ ଜଣାଇଲେ ଯେ, "ମାଆଙ୍କର ଶିରପୀଡ଼ା ରୋଗରେ ମୃତ୍ୟୁ ହୋଇଲା । ମରିବାର ଠିକ୍ ପୂର୍ବରୁ କପାଳରେ ଚଡ଼ୁ ଦେବାକୁ ମତେ କହିଲେ । କିନ୍ତୁ ଦୁର୍ଭାଗ୍ୟର କଥା, ସେ ସମୟରେ ଚଡ଼ୁକାଠି ପାଇଲି ନାହିଁ । ଶିରପୀଡ଼ା ଯନ୍ତ୍ରଣାରେ ମାଆଙ୍କର କାଳ ହୋଇଗଲା । ଆପଣମାନେ ଅନୁମତି ଦେଲେ ଏଇ ନିଆଁ ଗଦାରୁ ଚଡ଼ୁକାଠି ଆଣି ଆପଣମାନଙ୍କ କପାଳରେ ଟିକିଏ ଛୁଆଁଇ ଦେଲେ, ମାଆ ପରମତୃପ୍ତି ଲାଭ କରିବେ ବୋଲି ମୋର ବିଶ୍ୱାସ ।" ଏ ନିଷ୍ଠୁର ପ୍ରସ୍ତାବରେ କିଏ ଅବା ରାଜି ହେବ ! ବ୍ରାହ୍ମଣମାନେ ନିରୁତ୍ତର ହେଲେ, ଭୋଜନ ଶେଷରେ ଯଦୁମଣି ଗୋଟି ଗୋଟି କରି ସମସ୍ତଙ୍କ କପାଳରେ ଆଞ୍ଚା କରି ଦାଗି ଦେଇ ଦକ୍ଷିଣା ମଧ୍ୟ ଦେଲେ । ଯଦୁମଣିଙ୍କର ଏ ନିଷ୍ଠୁର ବ୍ୟବହାର ରାଜା ଶୁଣି ଯଦୁମଣିଙ୍କୁ ଡ଼ାକାଇ ପଚାରିଲେ ।

ଯଦୁମଣି ବିନୀତ ଭାବରେ କହିଲେ—"ପ୍ରଭୁ ମାତାଙ୍କ ଶେଷ ଅଭିଳାଷ ପୂରଣ ପାଇଁ ସୁନା କଷିଆମ୍ବ ଦେଲେ, ମୋ ମାଆଙ୍କ ଶେଷ ଇଚ୍ଛା ପୂରଣ ପାଇଁ ମୁଁ ଚଡ଼ୁ ଦାଗ ଦେଲି । ବ୍ରାହ୍ମଣମାନେ ତ ପାଇଲେ, ମା ପାଇବେ, ଏ ଧର୍ମୀୟ ବିଶ୍ୱାସ ଆମମାନଙ୍କର ଅଛି, ତେଣୁ ମୋର ଦୋଷ କଅଣ ହେଲା ।" ରାଜା ଓ ତାଙ୍କ ପାଖରେ ଥିବା ଲୋକେ ଯଦୁମଣିଙ୍କ ଭଣ୍ଡାମିରେ ହସି ହସି ଗଡ଼ିଗଲେ । ଏ ଚଡ଼ୁ ଦାଗ ବ୍ରାହ୍ମଣ ପଣ୍ଡିତମାନଙ୍କ କପାଳରେ ଚନ୍ଦନ ବିନ୍ଦୁ ଭଳି ବହୁଦିନ ପର୍ଯ୍ୟନ୍ତ ରହି, ଯଦୁମଣିଙ୍କ ଧୂର୍ତ୍ତାମିର ସ୍ମୃତିଫଳକ ରୂପେ ବିରାଜୁଥିଲା ।

ପଦ୍ମମଣିଙ୍କ ମିତ୍ର ଶ୍ୱେତ୍ୟୋଗ ପଢିବାରୁ ଶୁଣିଥିଲା ମାନଁ ମେ ଗ୍ରନ୍ଥଙ୍କ ଠାରୁ କଣେ ଆର୍ଥିକ ସାହାଯ୍ୟ ମିଳିବ; ସେ କଥା ଜାଣି କହୁଥିଲେ । କାରଣ ଅନେକ ଅଶୌଚ ବ୍ୟକ୍ତିର ମୁଖ ଦର୍ଶନ ଦେଖିବା ରାଜାଙ୍କ ମରଂପ୍ରମର୍ଗରେ ବାରଣ ଅଛି । ଯଦି ଅନ୍ୟ ଲୋକ ଦେଇ ଜଣାଇବେ, ଆଚାନୁରୂପ ସାହାଯ୍ୟ ମିଳିବାରେ ପ୍ରତିବନ୍ଧକ ହେବେ ରାଜାଙ୍କ ପାର୍ଶ୍ୱଚର ବ୍ୟକ୍ତିମାନେ ।

ପଦ୍ମମଣି ଗୋଟିଏ ଅଭିନବ ପନ୍ଥା ବାହାର କଲେ । ରାତିରେ ପିତାଙ୍କ ଶବ ସତ୍କାର କରାଇ ସାରି ଘରକୁ ନ ଯାଇ ସିଧା ରାଜବାଟି ନିକଟ ରାଧାନାଥଙ୍କ ମନ୍ଦିର ଦୁଆର ମୁହଁରେ ବସି ରହିଲେ । ସକାଳେ ସେବକମାନେ ଠାକୁରଙ୍କ ଭୋଗ ବଢ଼ାଇବା ପାଇଁ ଆସିଲେ । ପଦ୍ମମଣି ସେମାନଙ୍କୁ କହିଲେ, "ଆଜି ଠାକୁରଙ୍କ ଭୋଗ ବନ୍ଦ । ମୋ ପିତାଙ୍କ ପରଲୋକ ହୋଇଥିବାରୁ ଠାକୁରେ ଅଦ୍ୟୋରାତ୍ର ଉପବାସ ରହିବେ । କାରଣ ଏ ଠାକୁର ମୂର୍ତ୍ତି ମୋ ପିତା ନିର୍ମାଣ କରିଥିଲେ । "ଏକଥା ରାଜାଙ୍କୁ ଶୁଣାଇ ଦିଆଗଲା । ରାଜା ପଦ୍ମମଣିଙ୍କ ଧୂର୍ତ୍ତାମି ଜାଣି ଦେବାର୍ଚ୍ଚନ ସାରି ରାଧାନାଥ ଜୀଉଙ୍କ ଦର୍ଶନ ନିମିତ୍ତ ଆସିଲେ । ରାଜା ଆସିଲାବେଳକୁ ପଦ୍ମମଣି ଗୋଟାଏ ମୋଟ ଗୁଡ଼ରରେ ସର୍ବାଙ୍ଗ ଆବୃତ କରି ବସିଛନ୍ତି । ରାଜା ପଦ୍ମମଣିଙ୍କୁ କହିଲେ— "କହୋ ପଦ୍ମମଣି, ଆଜି ଏକ ନୂଆ ସୁଆଙ୍ଗ ? ବାଟ ଛାଡ଼ି ଦିଅ, ଦିଅଙ୍କ ଭୋଗ ବଢ଼ୁ ?" ମୋଟ ଗୁଡ଼ର ଭିତରେ ମୁହଁ ଲୁଚାଇ ରଖି ପଦ୍ମମଣି କହିଲେ— "ତୁମ୍ଭଙ୍କ ଦ୍ରବ୍ୟ ଅବଧାନକୁ ଆସୁ, ମୋ ବାପାଙ୍କ ମୃତ୍ୟୁରେ 'ରାଧାନାଥ ଜୀଉ' ଅଶୌଚ ହୋଇଛନ୍ତି । ତେଣୁ ତାଙ୍କ ମୁଖ ଦର୍ଶନ ତୁମ୍ଭଙ୍କ ପକ୍ଷରେ ନିଷେଧ । ମୋ ବାପ ଏଇ ଦେବତାଙ୍କ ପିତୃ ତୁଲ୍ୟ ।

ତେଣୁ ଏ ଠାକୁର ମୋର ଭାଇ ପରି । ବାପାଙ୍କ ଶୁଦ୍ଧିକ୍ରିୟା କେବଳ ସଂପନ୍ନ ହେବ. ସେ କଥା ଚିନ୍ତା କରିବା ପାଇଁ ଠାକୁରଙ୍କ ପାଖକୁ ଆସିଛି । ତୁମ୍ଭ ତ ମୋ ମୁହଁ ଦେଖିବେ ନାହିଁ ସେଥିପାଇଁ ଦୋଡ଼ଧାଡ଼ ହୋଇ ବସିଛି । ଶୁଦ୍ଧିକ୍ରିୟାରେ ଅତି କମ୍‌ରେ ଦୁଇ ଶହ ଟଙ୍କା ଲାଗିବ । ମୋ ପାଖରେ କପର୍ଦ୍ଦକ ସୁଦ୍ଧା ନାହିଁ । ମୁଁ ତୁମ୍ଭରେ ଅନୁକରି ଶୁଦ୍ଧିକ୍ରିୟାରେ ଲାଗିବା ଖର୍ଚ୍ଚ ତୁଲାଇ ଦେବ । ବାକିତକ ରାଧାନାଥ କେଉଁ କପରି ଚଳାଇବେ, ସେ ଜାଣନ୍ତୁ ।"

ରାଜା ଚତୁର ପଦ୍ମମଣିଙ୍କ ନାଟକୀୟ କ୍ରନ୍ଦନରେ ମୁଗ୍ଧ ହୋଇ ତାଙ୍କୁ ଦୁଇଶହ ଟଙ୍କା ଦେବାକୁ ସଙ୍ଗେ ସଙ୍ଗେ ଆଦେଶ ଦେଲେ । ଅତି ସରଳ ସହଜ ଉପାୟରେ ଟଙ୍କାତକ ଧରି ନିଶ୍ଚିନ୍ତରେ ପଦ୍ମମଣି ଘରକୁ ବାହୁଡ଼ିଲେ । ଠାକୁରଙ୍କ ଦୁଆର ଫିଟିଲା । ଦୈନିକ ସେବାପୂଜା ଯଥାମତ ଚାଲିଲା ।

ପୂର୍ବେ ଗଡ଼ଜାତମାନଙ୍କରେ ରାଜ ପରିବାରରେ ବିବାହ ଉପନୟନ ଆଦି ଶୁଭ କାର୍ଯ୍ୟରେ ପ୍ରଜାଙ୍କ ଠାରୁ ଟିକସ ଆଦାୟରେ ଅର୍ଥ ସଂଗୃହୀତ ହେଉଥିଲା । ଏଇ ଅର୍ଥ ସଂଗ୍ରହ ପ୍ରଥାକୁ 'ମାଗଣ' କୁହାଯାଉଥିଲା । 'ମାଗଣ' ଛଡ଼ା ପ୍ରଜାମାନଙ୍କ ବାଡ଼ି ବଗିଚାରେ ଥିବା ଆଳୁ, ସାରୁ, ବାଇଗଣ—ଏସବୁ ପନିପରିବା ସରବରାକାର-ମାନେ ଆଦାୟ କରି ରାଜବାଟିକୁ 'ଭାର' ସ୍ୱରୂପ ପଠାନ୍ତି । ଏଇପରି ରାଜ ପରିବାରର ଶୁଭକାର୍ଯ୍ୟରେ ପଦ୍ମମଣି ଘରେ ନଥିବାବେଳେ ତାଙ୍କ ବାଡ଼ରୁ ସରବରାକାର ଆଳୁ ଖୋଳାଇ ଉଆସକୁ ପଠାଇଦେଲେ । ପଦ୍ମମଣି ଘରକୁ ଆସି, ଏକଥା ଶୁଣିଲେ । ସେ ତରତର ହୋଇ ତେଲ ଲଗାଇ ଗାମୁଛା ଖଣ୍ଡେ

ଧରି ରାଜାଙ୍କ ଉଆସକୁ ଧାଇଁଲେ । ରାଜା ଯଦୁମଣିଙ୍କ ଏ ଅବସ୍ଥାରେ ଦେଖି, ଆସିବାର କାରଣ ପଚାରିଲେ । ଯଦୁମଣି କହିଲେ— "ଆଜ୍ଞା, ଉଆସକୁ ଯୁଁ ଆଳୁ ଘରସ୍ତୁନ୍ଦ୍ର ଆସିଚ, ସେଥିରେ ମୋ ବାଡ଼ର ବଡ ବଡ଼ ଆଳୁ ରହିଚି । ବାଡ଼ରେ ଗାତ ଖୋଳି ସେଥିରେ ଅମ ପରିବାର ସମସ୍ତେ ମଳତ୍ୟାଗ କରନ୍ତି । ଗୋଟିଏ ଗାତ ମଳପୂର୍ଣ୍ଣ ହୋଇ ଆଉ ଗାତ ଖୋଳାଯାଇ ବହିର୍ଦେଶ କାର୍ଯ୍ୟ ଚାଲେ । ମଳ ସବୁ ଖତ ହୋଇଗଲେ, ପହିଲା ଆଷାଢ଼ରେ ଗୋଟିଏ ଗୋଟିଏ ଆଳୁ ମୁଣ୍ଡି ଲଗାଇ ଦିଏ । ବଳୁଆ ଖତ ଯୋଗୁଁ ଦୁଇ ତିନ ବର୍ଷ ପରେ ବଡ଼ ବଡ଼ ପୁଷ୍ଟ ଆଳୁ ଖମ୍ବ ପରି ବାହାରେ । ମୋର ସାମାନ୍ୟ ପଦାର୍ଥ ତୁମ୍ଭଙ୍କ କାର୍ଯ୍ୟରେ ଲାଗିଲେ, ମୁଁ କୃତ୍ୟକୃତ୍ୟ ହେବାର କଥା । କିନ୍ତୁ ଏପରି ମଳପୁଷ୍ଟ ଆଳୁ ଦେବତା, ବ୍ରାହ୍ମଣବୈଷ୍ଣବଙ୍କ ଖାଦ୍ୟରେ ଲାଗିଲେ, ମୁଁ ଅପରାଧୀ ହେବ; ତେଣୁ ଲଣ୍ଡଭଣ୍ଡ ହୋଇ ତୁମ୍ଭକୁ ଦଉଡ଼ି ଆସିଲି, ମୋ ବାଡ଼ରୁ ଆଳୁ ଖୋଳା ହେବାବେଳେ ମୁଁ ଘରେ ନ ଥିଲି । ଏଥକୁ ତୁମ୍ଭ ଯାହା ବିଚାର କରିବେ । ମୁଁ ଯାଉଚି ।"

ରାଜା ଯଦୁମଣିଙ୍କ ଖଣ୍ଡ ପଣିଆ ବୁଝି ବିଚାର କହିଲେ— "ଯଦୁମଣି, ତୁମେ ଯାହା କହିଲ ସତ, ଏ ଜିନିଷ ଦେବତା ବ୍ରାହ୍ମଣଙ୍କ ଖାଦ୍ୟରେ ଲାଗିଲେ ତୁମର ଏକା ନୁହେ, ଆମର ମଧ୍ୟ ପାପ ହେବ । ଗୋଦାମ ଘରକୁ ଯାଇ ତୁମ ଆଳୁ ଚିହ୍ନି ବାହାର କର, ମୁଁ ତୁମ ଘରକୁ ପଠାଇ ଦେବ ।" ଯଦୁମଣି ରାଜାଙ୍କର ଏପରି ହୁକୁମ ହେବ ବୋଲି ଆଗରୁ ଅନୁମାନ କରିଥିଲେ । ସେଇଥି ପାଇଁ ଦେହରେ ତେଲ ଲଗାଇ ଆସିଥିଲେ । କାରଣ ତେଲ ବୋଳି ହୋଇ ଆଳୁ ଗୋଦାମରେ ପଶିଲେ, ଦେହ କୁଣ୍ଡାଇ ହୁଏ ନାହିଁ

ଉଦ୍ଦେଶ୍ୟ ସିଦ୍ଧି ହେବାର ଜାଣି ଧୂର୍ତ୍ତ ଯଦୁମଣି ଆମ୍ବ ଗୋଦାମରେ ପଶି ବାଛି ବାଛି ବଡ଼ ବଡ଼ ଆମ୍ବ ଅଧଗୋଡ଼ିଏ ଥୋଇଦେଲେ । ସେଥରକ ଶଗଡ଼ରେ ଯଦୁମଣିଙ୍କ ଘରକୁ ଗଲା ।

କବିଙ୍କର ପରିହାସ-ଉକ୍ତି ଅଦ୍ୟାପି ଲୋକ ମୁଖରେ ଶୁଣାଯାଏ । 'ଯଦୁମଣି କଥା-ରହସ୍ୟ' ପୁସ୍ତକ ପ୍ରଭୃତିରେ ଉକ୍ତିଗୁଡ଼ିଏ ସଂଗୃହୀତ ହୋଇ ପ୍ରକାଶିତ ହୋଇଛି । ଏଥିରେ ସେହି ପରିହାସ ଉକ୍ତିଗୁଡ଼ିକରୁ କେତେକ ଦିଆଗଲେ, ଅସଙ୍ଗତ ବା ଅପ୍ରାସଙ୍ଗିକ ହେବ ନାହିଁ ।

ପୂର୍ବେ ରାଜାମାନେ ଦେଇଥିବା ଜାଗିରି ଜମି ଜାଗିରଦାରର ସାମାନ୍ୟ ଦୋଷ ଦେଖିଲେ, ଜାଗିରଦାରଠାରୁ କାଢ଼ି ନେଉଥିଲେ । ଯଦୁମଣି ଏହା ଦେଖି ରାଜାଙ୍କ ଠାରୁ ପାଇଥିବା ଦୁଇବାଟି ଜାଗିର 'ବିଷ୍ଣୁ' ଅଟେ ବୋଲି ଜାଗିର ପଟ୍ଟାରେ ଲେଖାଇ ନେଇଥିଲେ । ଯଦୁମଣିଙ୍କ ଜମି ତଳକୁ ସାମନ୍ତ ସୁରେନ୍ଦ୍ର ସିଂହଙ୍କ ଜମି । ପାଣିର ଅଭାବ, ଅନାବନ ସମୟରେ ସୁରେନ୍ଦ୍ର ହିଡ଼ କାଟି ଯଦୁମଣିଙ୍କ ଜମିରୁ ପାଣି ନେଇ ନିଜ ଜମିରେ ପାଣି ମଡ଼ାନ୍ତି । ଯଦୁମଣି ଏଥିରେ ଅସନ୍ତୁଷ୍ଟ ହୋଇ ସିଂହଙ୍କୁ ଅଭିମାନସ୍ୱରେ କହିଲେ, "ଆପଣ ଉଚ୍ଚକୁଳରେ ଜନ୍ମ, ମୁଁ ନୀଚଜାତି । ମୁଁ ନୀଚଜାତିର ଲୋକ ହୋଇ ଉପରେ ରହିବି, ଆପଣ ତଳେ ରହିବେ, ଏଇଟା ଅସଙ୍ଗତ ଓ ଅସୁନ୍ଦର । ତେଣୁ ମୁଁ ତଳ ଜମି ନେଉଛି. ଆପଣ ଉପର ଜମି ନିଅନ୍ତୁ ।" ଏଥିରେ ସୁରେନ୍ଦ୍ର ସିଂହ ରାଜି ନହେବାରୁ କବିଙ୍କୁ ଅନ୍ୟ ପନ୍ଥା ଧରିବାକୁ ପଡ଼ିଲା । ଯଦୁମଣି କବିତାରେ ନିଜର ଗୁହାରି ରାଜାଙ୍କୁ ଜଣାଇଲେ ।

"ଆଜ୍ଞା ହୋଇଥିଲେ କ୍ଷେତ୍ର, ଦୁଇବାଟି ବାଡ଼ି ହେଉ,
ତହିଁରୁ ପୁଳାଏ ଖାଇବାକୁ ଏବେ ସୁରେନ୍ଦ୍ର ହେଲେଣି କାଉ ।"

ରାଜା ଏଥିରେ ତୁଷ୍ଟ ହୋଇ ସୁରେନ୍ଦ୍ରଙ୍କ ସଙ୍ଗେ କବିଙ୍କର ରଫା କରାଇ ଦେଇଥିଲେ ।

ରାଜବାଟିର ଦେବୀମୂର୍ତ୍ତି ନିକଟରେ ପ୍ରତି ଅମାବାସ୍ୟାରେ ଯଦୁମଣି ସେରେ ଉଆ (ଅରୁଆ) ଚାଉଳ ପାଉଥିଲେ । ଥରେ ଏହା ନ ପାଇବାରୁ ରାଜାଙ୍କୁ ଜଣାଇଲେ, "ଉଆସ ର ନାହିଁ ଆଉ ଉଆସରେ ।" ରାଜା ଏହା ଜାଣିଲା ପରେ ଯଦୁମଣିଙ୍କ 'ପଡ଼'ରେ ଆଉ ଖିଲାପ କରାଯାଇ ନଥିଲା ।

ଦୁର୍ଗାପୂଜା ସମୟରେ ଦେବୀଙ୍କୁ ମେଷ ବା ଛାଗବଳି ଦିଆଯାଉଥିଲା । ଏହି ଜଘନ୍ୟ ପ୍ରଥାରେ କବି ହୃଦୟ ବିଚଳିତ ହେବା ଅସ୍ୱାଭାବିକ ନୁହେ । ଯଦୁମଣି ଘାତକକୁ ତାର ନିଷ୍ଠୁର ପାପକର୍ମ ପାଇଁ ଭବିଷ୍ୟତ୍ ବାଣୀ ଶୁଣାଇ କହିଥିଲେ—

"କର୍କଶ କରି କରେ କଟାରି ଧରି,
କ୍ରୋଧେ ହାଣାଇ ଗଳ କନ୍ଧରୁ କରି ।
ଖାଇଣ ମହାମାୟୀ ସନ୍ତୁଷ ହୋଇ,
ଜନ୍ମ ଜନ୍ମକେ ହାଣା ହୋଇବୁ ତୁହି ।"

ଧାତୁବିଗ୍ରହ ମୂର୍ତ୍ତି ପୂଜିତ ହେଉଥିବାର ଦେଖି କବି କହିଥିଲେ—

"କେଉଁଠାରେ ଖଣ୍ଡ, ଗଣ୍ଡ, କେଉଁଠାରେ ମୁଣ୍ଡ,
ଏହିଠାରେ ବୋଲଉଛ କରୁଣା ବାରିଧି ।"

ଜଣେ ବେଶ୍ୟାର ଅଙ୍ଗରେ ବସନ୍ତ ଚିହ୍ନ ଦେଖି, ରାଜା କହିଲେ, "ପଦ୍ମମଣି ଏ ବେଶ୍ୟାର ରୂପ ବର୍ଣ୍ଣନା କର—କବିତାରେ ।" ରାଜା ପୁଣି କହିଲେ—"ବସନ୍ତ ମୁହଁକୁ ଉପମା ଥାଉ ।" ସଙ୍ଗେ ସଙ୍ଗେ ପଦ୍ମମଣି କହିଲେ—

"କାମ କାକର ଛଣା ଜାଲି ଥାଉ ।"

ନୟାଗଡ଼ର ଜଣେ ତେଲି ରାଜଅନୁଗ୍ରହ ବଳରେ ବେଠିଆ ଲଗାଇ ତିଆର କରାଇଥିଲେ, ଗୋଟିଏ ମଣ୍ଡପ । ସେଇ ମଣ୍ଡପ ପ୍ରତିଷ୍ଠା କରାଇଲେ—ତେଲି ମହାଜନ ନିଜ ନାମରେ । ଏଥିରେ ପଦ୍ମମଣି ଅସନ୍ତୁଷ୍ଟ ହୋଇ କହିଲେ—

"ସରିଲା ରାଜାଙ୍କ ଗଣ୍ଡି,
ପରଜାଏ କଲେ ବେଠି,
ଏମନ୍ତ ମଣ୍ଡପ ପ୍ରତିଷ୍ଠା ଗୁଡ଼ଲା,
ତେଲି ମୁଣ୍ଡେ ହେଲା ବୃଷ୍ଟି ।"

ଜଣେ ତେଲି ମହାଜନର କୃପଣତା ଲକ୍ଷ୍ୟ କରି କବି ପଦ୍ମମଣି କବିତା ଛଳରେ କହିଥିଲେ :—

"ଘଣାରେ ଗାବଲ ଘିଆ, ଜାତିଗୋତ ବଳଦିଆ,
ଭିକାରୀକୁ ବୋଇଲେ ଦରୁ ତୁ ଘରି-ଯା ଦେଖିମଲ-ହଳଦିଆ ।"

ରାଜଗୁରୁଙ୍କ ନିକଟକୁ ଯାଇ ପଦ୍ମମଣି କହିଲେ—

"ଆ-ଶ୍ରାଦ୍ଧ, ଆ-ଶ୍ରାଦ୍ଧ ବୋଲି
ବୋଲୁନାହିଁ ଶନିବାର ଦିନ ଆସିବ;
ଆଶ୍ରାଦ୍ଧ ଆଶ୍ରାଦ୍ଧ ବୋଲି ଯେ
ବୋଲୁଛୁ ସେ ପାପ ଆପଣ ନାଶିବ ।"

ରାଜଗୁରୁ ହୁକୁମ ଦେଲେ—ଗୁମସ୍ତା ମଧୁସୂଦନ ଶତପଥୀଙ୍କୁ ଶ୍ରାଦ୍ଧ ପାଇଁ ପାଞ୍ଚଟଙ୍କା ପଦ୍ମମଣିଙ୍କୁ ଦେବାକୁ । କିନ୍ତୁ ଶତପଥୀଏ, ଟଙ୍କା ଦେବାରେ ଟାଳଟୁଳ କରିବାରୁ କବି ରାଜଗୁରୁଙ୍କୁ କହିଲେ—

"ମଧୁସୂଦନ ଶତପଥୀଙ୍କର ମଧୁସୂଦନ (୧)
ଶୁଣନ୍ତି ନାହିଁ ନବଦୁର୍ଗ ନାଥ ନଟକଣ୍ଠକୁ (୨)
ନୋହନ୍ତି ତବ ଚରଣ ତଳକୁ; ବେଭାର ଦେଇନ ତାକୁ,
କୁତା ପରି କରି ଫିଙ୍ଗିଦେଲ ତବ ହସ୍ତାକ୍ଷର ମୁକୁନ୍ଦାକୁ ।"

ନିଜ ଜମି ଚଷିବା ପାଇଁ ରାଜାଙ୍କୁ ହଳେ ବଳଦ ପଦ୍ମମଣି ମାଗିଥିଲେ । ରାଜା ଦେବାକୁ ସ୍ୱୀକୃତ ହୋଇ ମଧ୍ୟ ବଳଦ ଦେବାରେ ଅଯଥା ବିଳମ୍ବ କରିବାରୁ ରାଜାଙ୍କୁ କବିତାଟି ଲେଖି ଜଣାଇଲେ ।

"ଦବା ଦବା ବୋଲି ହୋଇଲେ ବରଷିଲେ ଜଳଦ,
ହଳ ମାଣ କେତେ ଚଷନ୍ତି ଦେଇଥିଲେ ବଳଦ ।
ଦେବେ ଦେବେ ବୋଲି ଯାହା ମୁଁ ଜଗତରେ କହିଲି,
ଦେବଦେବଙ୍କ ବାହନ ପଚ୍ଛଆଡ଼ୁ ପାଇଲି ।"

ଏ କବିତା ପାଠକରି ରାଜା ଅତି ଲଜ୍ଜିତ ହେଲେ, ତତ୍‌କ୍ଷଣାତ୍ ହଳେ ବଳଦ ପଦ୍ମମଣିଙ୍କ ଘରକୁ ପଠାଇଦେଲେ ।

ଆଉ ଥରେ ଘୋଡ଼ାଟିଏ ରାଜାଙ୍କୁ ମାଗି, ଘୋଡ଼ାଟିର ଆକାର ପ୍ରକାର ବର୍ଣ୍ଣନା କରି କବିତାଟିଏ ଲେଖି ପଠାଇଥିଲେ ।

"ନୋହିବ ହରିଣ ନୋହିବ ଗାଈ,
ଘୋଡ଼ା ନାମ ବହି ହୋଇବ ଗାଈ ।

---

(୧) ମଦ୍ୟପ; (୨) ମସ୍ତକ, ଶିର ।

ପିଇବ ତୋରଣି ଖାଇବ କୁଣ୍ଡା,
ତେବେ ଯଦୁମଣି ହୋଇବ ଭେଣ୍ଡା ।"

ଯୁବକ ଯଦୁମଣି ଜଣେ ବେଶ୍ୟାଙ୍କ ପ୍ରତି ଆସକ୍ତ ହୋଇ, ପରେ ଅନୁତାପ କରି ଗୋଟିଏ ସଙ୍ଗୀତ ଲେଖି, ବେଶ୍ୟା ପାଖକୁ ପଠାଇ ଦେଇଥିଲେ—

ଜାଣୁ ଜାଣୁ ଖଣାରେ ମୁଁ ପଡ଼ିଲି ରେ
ଜଣା ନୁହେଁ ସରେଣୀ ଯା ଛୁଡ଼ିଲି ରେ । ପଦ ।
ଡିଣୀ ନିଣି ବୁଦ୍ଧିରେ, ଚଳିଲି ଘଣା ମଢରେ,
ରଣା ଦେଖାଇ ବର୍ଷା ଆଡ଼ିଲା ତୃଷ୍ଣ,
ଝଣ୍ଡ ଛପ ଧ୍ୱଂସନ୍ତ କରିବା ରସବନ୍ତ
ସଖୀ ନାୟିକା ସଙ୍ଗ ଛୁଡ଼ିଲି ରେ । ୧ ।
ନିପଟ ମରକଟି ବଜାର ନାହାକାଟି
ଚାଦାନ୍ତ ଉରେ ମୁଣ୍ଡ ମାଡ଼ିଲି ରେ,
ବହୁକାଳ ସୁରଙ୍ଗ ପାତାଳ ଫୁଟା ଲଙ୍ଗ—
ଶିରେ ବାରୁଣି ଆଣି ଢାଳିଲି ରେ । ୨ ।
କୁଟିଳ କଥା ମୋର ମୁସଲମାନ ଗିର
ଯାନ୍ତ୍ରିକ କଳପମ୍ ଯୋଡ଼ିଲି ରେ,
ରାତିଟି ଉଜାଗର ନିଦ୍ରାରେ ଗଡ଼ଗର
ହୋଇ ଉଠେ ମୁଁ କେତେ ଡାକିଲି ରେ । ୩ ।
ନ ଶୁଣିଲ୍ ମୋ ଗିର ଯଦୁମଣି ଉତ୍ତର
କର୍ମ ଦୋଷରୁ ଏହା ବଢ଼ିଲରେ । ୪ ।

କବି ଯଦୁମଣିଙ୍କ ଖଣ୍ଡ କବିତା ସଂଗୃହୀତ ହେଲେ ତା' ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ହେବ । ତାଙ୍କର କେତେ କବିତା ଲୋପ

ପାଇ ଯାଇଛି ବୋଲି ଅନୁମାନ ହୁଏ । ତଥାପି ଲୋକ ମୁଖରେ କବିଙ୍କର କେତେକ କବିତା ଏବେ ମଧ୍ୟ ଶୁଣାଯାଏ; ଯେ ସବୁ କବିତା କେଉଁ ଘଟଣା ଆଧାରରେ କବି ଲେଖିଥିଲେ, ସେ ସବୁ ଗଭୀର ଅନୁସନ୍ଧାନ ସାପେକ୍ଷ । ତେଣୁ ଯଥା ସମ୍ଭବ ସଂଗୃହୀତ ଖଣ୍ଡ କବିତା ତଳେ ଦିଆଗଲା ।

"ପାଣ୍ଡବଙ୍କର ଜ୍ୟେଷ୍ଠ ଭ୍ରାତ ବଟଲମ୍ବକର,
ବଟକ କଟଅଛନ୍ତି ସେ ରଣପୁର ରେ ।"
(ଜିବା-ବାଡ଼ି; ହଇଜା)

× × × ×

"ଲଖ ରାଜ ଭାରତ ଭୂମି ଛନିବାକି ସେ ମୋର ପଡ଼ିଛି ବନ୍ଧାରେ,
ଅଷ୍ଟ ପ୍ରାଣୀ ମୋର କଷ୍ଟ ପାଉଛନ୍ତି, ମରୁଛି ମୁଁ ମହାଅନ୍ଧାରେ ।
ମଣିମା, ସରଳ, ସରଳ, ସରଳ, ସରଳ,
ଦାରୁଣୀ ବଲ୍ଲଭ-ଦାରନୁସରଣେ ନାରୁଣୀ ବଲ୍ଲଭେ ପେଷିଲ ।"

"ନକଟ ଚଉଲ ଘାନ ବଡ଼କୁ
ଯେମନ୍ତ ହୁଏ ଭରି ସେମନ୍ତ ଛଲକୁ ।"

"ହାଣ୍ଡିମାନ ପୁଅ ଗୋତ ଏସନ,
ଗାଣ୍ଡିପାରେ ନ ମିଳଇ ବାସନ,
ନାଣ୍ଡିଅଛି କର୍ଣ୍ଣେ ଗଜ ମୁକୁତା,
ଡାଣ୍ଡି ଅଛି ମହାଶମ୍ଭୁ ଦେବତା,
ପାଣ୍ଡୁଛି ପାଟରେ, ଜର ଯୋଡାକୁ ମାଣ୍ଡୁଛି ବାଟରେ ।"

"ଧନୁମାସ ହେଲା ହନୁ ନ ଚଳିଲା କହିବାକୁ ବଡ଼ ଲାଜ,
ମୁଆଁ ଖାଇବାକୁ ମୁଁ—ଆଁ କରଅଛି ଦେବା ହେଉ ମହାରାଜ ।"

"ମାଉଁସ ଦିଅନ୍ତି ପାନ୍ତ
ବାଉଁଶ ଅଗରେ ଗୋଡ଼ ଟୋଳୁଥିଲେ ଅନେକ ଟେକଣ ଜାନ୍ତୁ ।"

"ଗଡ଼ କୁଡ଼ପାର ଫେଡ଼ି ଦୁନ୍ଦୁରା,
କଟେ ଖଡ଼ଗୁଆ ମୋଡ଼ା ଭଉଁରା,
ହସ୍ତେ ଅଠା ବାଡ଼ ମୁଖେ କାହାଳୀ,
ଧୂମ ଧୂଆଁ ଦେଉଥାନ୍ତି ଟିକ ।
ଏ ଜାତିଙ୍କ ଠଣା, ମଦତ ପାଟନ ନଥାଇ ଠିକଣା ।"

"ବଟ ବୃକ୍ଷ ପରେ ବାନର ଚଢ଼ି,
ଦେଖି ବାଦ୍ଧବ୍ୟର ଚଳଲ ଚଉଡ଼ି;
ମନେ ସେ ଇଚ୍ଛିଲା
ହସି ମଣ୍ଡାଫଳ ଟୋଇ ଦେଲା ।"

"ଧନ୍ୟ ଆଠଗଡ଼ ଲୀଳାରେ
ବଣି ପହରିଙ୍କେ ଅନ୍ଧାରେ ଆସନ୍ତି, ଗୃହକରଙ୍କ ଆଗେ ଦୁଆରେ ।"

"ଯେଉଁଦିନୁ ଅମେ ଏଠାକୁ ଅଇଲୁ ସେହି ଦିନୁ ହେଲା ଖଣ୍ଡା,
ଲେମ୍ବୁ ନାରଙ୍ଗରେ ହାତ ନ ବାଜିଲା ଘଉଣିଆ ହେଲା ଛଡ଼ା ।
ଆମ୍ବ କଦଳୀରୁ କି ସୁଖ ମିଳଇ ସେ ତ ଲୋଡ଼ୁଥାଏ ସାଥି,
ଯଦୁମଣି ବୋଲେ କରମଙ୍ଗା ହେଲେ କଣ୍ଟା ବା ରୁଚନ୍ତା ପଥି ।"

"ଦୁଆର ଦେହଳି ଜଳ୍ପନ ଧରଣି ବକାଳଡ଼ଥିଲା ଝଲକ,
ଦେଖିଲେ ବାଳୀକି ଲାଗିଲା ଭେଳକ ଚମ୍ପଲ ମଦନ ଶୂଳକ,
ମହିମା, ଭ୍ରାନ୍ତ କେତେ ଚଟ୍ଟ କରନ୍ତି,
ଝଲକ ଝଲକ ହୋଇଣ ବାଳୀକି କାଳକେ କାଳିକା ପାଇଛି ।"

"ପାଶରେ ବସିଣ ବର୍ଣ୍ଣନା ଭାଷିଲ କଣା ମୁଁ ଆପଣଙ୍କର,
ମୁଣ୍ଡ ମାଇଲେ ଭୁଣ୍ଡିଲେ ଖିଁ ବୋଲ କଣ ମୁଆଁ ପଣକର ।"

"ଗଦାଧର ନଗର ନବାଗ୍ରହ ଜିହ୍ୱାର ଗଙ୍ଗାଦେବୀଙ୍କ ହାତେ ସ୍ନାନ —
ଶମ୍ଭୁଙ୍କୁ କରାଇଛୁ ସ୍ନାନ, ମୋ ଆନନ୍ଦ କାର୍ଯ୍ୟରେ ବସୁର ମରମରେ
ମୋ ମାଳୀ ନୋହିବୁ ଢେନାରେ ରୂପବଲ୍ଲି,
ଢାକିରି ହେଲେ ନେଇ ରାଜା ରାଜୁତ ଗାଇ
ପାଳ କରିବ ମୋତେ ଗ୍ରାମ୍ଭ ।"

"ଏ ଧାନ ଦରପଣ ମୁହାଁ,
ଅଙ୍କେ ବସାଇଲେ ନ ଗଣନ୍ତି ଆଉ ଧାନ ଦରପଣ ମୁହାଁ ।"

"ବାମହସ୍ତ ବୋଲେ ଛୁଇଁବା ପାଇଁ
ତେଣୁ ବିଧାତା କଲା ଛୁଇଁବା ପାଇଁ,
ଦକ୍ଷିଣ ହସ୍ତ ବୋଲେ ସୁନା ମୁଁ ଦିଆ,
ତେଣୁ ବିଧାତା କଲା ସୁନା ମୁଦିଆ ।"

"ଦାନ୍ତେ ବାଜନ୍ତେ ରୁଣ୍ଡମୁଣ୍ଡ ବାଜିଲା,
ଘୁଣ୍ଡି ଘୁଣ୍ଡି ବେଳାରୁ ଉହ୍ଲାଇ ଥିଲା,
ଦରାଣ୍ଡି ଆସିଥିଲା କେରାଣ୍ଡି ମାନ୍ଦ,
କେରାଣ୍ଡି ବାନ୍ଧିଅଛି ଦଶଇ ସ୍କନ୍ଧ ।"

"ଅଶାନ ଖୋଲୁଛି ମେଣ୍ଟ କଣାନ ପାଇଁ
ସଭାରେ ବସିଛି ସେ ଜଣକ ପାଇଁ ।"
"ପାର୍ଥ ଧନୁ ନାମ ଗାଇଲା ବେଳେ,
ଭୀମ ତାତ ଜାତ ହେଲେ ସେକାଳେ ।
ବଡ଼ ବିଜ୍ଞପଣ୍ଡି, ଆତ୍ମନାଶକୁ ଲେଖୁଛ ଆପଣ ।"

"ପୁଅ ନାଆଁ ଦେଲ୍ଲ ପୁରୁଷୋତ୍ତମ
ଏବେ ତୋ ପିଠିରେ ବ୍ରାଜେ ନଧୂମ ।"
"ଖଣ୍ଡା ଜଳଜଳ ଝଣ୍ଡା ଉଡ଼ଆ,
ହାଣନ୍ତି ମାରଇ ଦଶପଲ୍ଲିଆ
କଉଡ଼ି ଗଣଇ ରଣପୁରିଆ,
ସୁବର୍ଣ୍ଣ ଗିନାରେ ଚନ୍ଦନ ଲଗାନ୍ତି ବଧେଇଲ ପାଷ୍ଟା ନୂଆଗଡ଼ିଆ ।"
"ତୁ ମୋର ମନ କୁଟନୀ ଟାପରା, ତୁ ମୋର ମନକୁ ଶଳାଟାପରା ।"
"ଭଲ ଗହଣା, ଅଗଣା ଖୋଲରେ ହୋଇଲ ହଣା ।"
"ଅବଧାନେ ହେଲେ ଭୁଚ୍ଚା ମୂକୁଚା,
ଅବଶ୍ୟ ହୁଅନ୍ତୁ ମୁଁ ଘୁମୁ କୁଚା ।"
"ଚୋର ମୁଁ ହୁଅନ୍ତ ଦଅର ଥରେ,
କଥା କହୁଥାନ୍ତ ଦ' ଅରଥରେ ।
ବଜେ କରିଚନ୍ତ ଦଅଁ ରଥରେ,
ସଂକଳ୍ପ କରିଦଅ ରଥରେ ।"
"ଭରସା ଉଦରେ, ପଳାଇ ଆସିଲ ଭାରି ଜାଡ଼ରେ ।"
"କଳାଇକ ସିନା ବଳାଇ ଧଇଲ ଗୃହୁଁଛୁ ଏଣିକ ତେଣିକ,
ଯୁବାକାଳେ ଯାହା ଦେଖା ତ ନଥିଲ, ମହଣ ହେଉଛୁ ଏଣିକ ।"

( ଗ )

'ରାଘବ ବିଳାସ' କାବ୍ୟ ପଦ୍ମମଣିଙ୍କ ପ୍ରଥମ କାବ୍ୟ ରଚନା । ଭଞ୍ଜକବିଙ୍କ ଦ୍ୱାରା ପ୍ରଭାବିତ ହୋଇ ଏ କାବ୍ୟ ସେ ସୃଷ୍ଟି କରି-ଥିଲେ । ବିଷୟବସ୍ତୁରେ କିଛି ନୂତନତ୍ୱ ନାହିଁ । ବୈଦେହୀଶବିଳାସ ବିଷୟବସ୍ତୁର ଅନୁରୂପ । ଭଞ୍ଜଙ୍କ କାବ୍ୟକୁ ସମ୍ମୁଖରେ ରଖି

କବି ଯଦୁମଣି 'ରାଘବ ବିଳାସ' କାବ୍ୟ ରଚନା କରିଥିଲେ ବୋଲି କହିଲେ ଭୁଲ୍ ହେବନାହିଁ । ଏହି କାବ୍ୟ ଗ୍ରନ୍ଥଟିର ପାଣ୍ଡୁଲିପି ତାଳପତ୍ରରେ ଲେଖାହୋଇ ନୟାଗଡ଼ ରାଜବାଟିର ପୁସ୍ତକାଗାରରେ ସାଇତା ହୋଇ ରହିଥିଲା । ସେ ସମୟରେ ଓଡ଼ିଶାରେ ମୁଦ୍ରାଯନ୍ତ୍ର ନଥିଲା, ତେଣୁ କାବ୍ୟଟି ମୁଦ୍ରିତ ହେବାର ସମ୍ଭାବନା ମଧ୍ୟ ନଥିଲା । ଆକସ୍ମିକ ଅଗ୍ନିଦାହରେ ଉକ୍ତ ପୁସ୍ତକାଗାରଟି ଭସ୍ମୀଭୂତ ହୋଇଗଲା । ତେଣୁ କାବ୍ୟଗ୍ରନ୍ଥର ପାଣ୍ଡୁଲିପିଟି ଆଜି ମିଳିବ କୁଆଡ଼ୁ ? କବିଙ୍କ ସମସାମୟିକ କେତେକ ପ୍ରବୀଣ ଛାନ୍ଦରସିକ ବ୍ୟକ୍ତିଙ୍କଠାରୁ ବା ଅନ୍ୟକୌଣସି ସୂତ୍ରରୁ କେତେକ ଛାନ୍ଦ ସଂଗ୍ରହ କରି ତାଳପତ୍ରରେ ଲେଖି ରଖିଥିଲେ । ସେଥିମଧ୍ୟରୁ କେତେକ ଛାନ୍ଦ ପୂର୍ବାପୂରଭାବରେ ଲେଖାଯାଇ ନାହିଁ ମଧ୍ୟ । ସେ ଯାହାହେଉ, ବହୁ ଅନୁସନ୍ଧାନ ଫଳରେ ଯାହା ମିଳିଲା, ତା' ଘରପୋଡ଼ିରୁ କୁଟାଖିଏ ପାଇଲେ ଲଭ ପରି ମଣିବାକୁ ହେବ । କେତେକ ଛାନ୍ଦର ଭଣିତରୁ ଜଣାଯାଏ ଯେ ନୟାଗଡ଼ ରାଜା ଲଡୁକେଶ ମାନଧାତାଙ୍କ ନାମରେ ଭଣିତା କରି ଯଦୁମଣି ଏ କାବ୍ୟଟି ଲେଖିଥିଲେ । ସେ କାଳରେ କବି ଓ ଲେଖକ ରାଜାଙ୍କ ବାହୁ ଛାୟାରେ ଲାଳିତପାଳିତ ହୋଇ କାବ୍ୟ, ନାଟକ ଓ ସଂଗୀତ ରଚନାରେ ସମୟ ଅତିବାହିତ କରୁଥିଲେ । ସେ କାଳ ଆଜି ନାହିଁ । ସେ ଯାହାହେଉ, "ରାଘବ ବିଳାସ" କାବ୍ୟରୁ ସଂଗୃହୀତ ହୋଇଥିବା କେତେକ ଛାନ୍ଦ ଅନ୍ୟତ୍ର ଦିଆଯାଇଛି । ସେଥିରୁ କବିଙ୍କ ରଚନା ଶୈଳୀର ସ୍ପଷ୍ଟ ପରିଚୟ ମିଳିବ ।

"ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର" କାବ୍ୟଟି କବିଙ୍କର ପରିଣତ ବୟସର ଲେଖା ବୋଲି ମନେହୁଏ । ଶ୍ରୀକୃଷ୍ଣଙ୍କର ରୁକ୍ମିଣୀଙ୍କ ସହିତ ପରିଣୟ ବୃତ୍ତାନ୍ତ କାବ୍ୟଟିର ବିଷୟବସ୍ତୁ । ନୟାଗଡ଼ର ସ୍ୱର୍ଗତ

ରାଜା ରଘୁନାଥସିଂହ ମାନଧାତାଙ୍କ ଆମଳରେ ଏହି କାବ୍ୟଟି ମୁଦ୍ରିତ ହୋଇ ଆତ୍ମପ୍ରକାଶ କରିନି । କବିଙ୍କର ସମସ୍ତ କବିତା ଓ ଖଣ୍ଡ କବିତା ସଂଗୃହୀତ ହୋଇ ପ୍ରକାଶ ପାଇନାହିଁ । ସେଥିମଧ୍ୟରୁ ଯାହା ଲୋକମୁଖରେ ଏବେସୁଦ୍ଧା ରହିଛି । କେହି କେହି ପୁସ୍ତକ ପ୍ରକାଶକ ସେଗୁଡ଼ିକ ସଂଗ୍ରହ କରି "ଯଦୁମଣି-ରହସ୍ୟ" ଓ 'ଯଦୁମଣି କଥା ରହସ୍ୟ' ନାମରେ ଦୁଇଖଣ୍ଡି ପୁସ୍ତିକା ପ୍ରକାଶ କରିବା କଥା ପରେ ବୁଝାଯାଇଛି ।

କବି ଯଦୁମଣି ଆଜୀବନ ରାଜଦରବାରରେ ବଞ୍ଚି ଆସିଥିଲେ । ଓଡ଼ିଶାର ବହୁ ରାଜା ଓ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ନିକଟରେ ସେ ସୁପରିଚିତ ଥିଲେ । ତାଙ୍କର ଆଶୁ କବିତ୍ୱ ତାଙ୍କ କବି ଜୀବନର ବୈଶିଷ୍ଟ୍ୟ । ଓଡ଼ିଶାର ରାଜା ମହାରାଜାଙ୍କ ବିରୁଦ ମୁତାବକ ମୁହେଁ ମୁହେଁ ଦୁଇ ଚାରିପଦ ସରସ-କବିତା ରଚନା କରିବାରେ ସେ ଚିରଅଭ୍ୟସ୍ତ ଥିଲେ । କବିତାଗୁଡ଼ିକୁ ଲିପିବଦ୍ଧ କରିବାର ପ୍ରୟୋଜନୀୟତା ସେ ସମୟରେ ଉପଲବ୍ଧ ହୋଇନଥିଲା । କିନ୍ତୁ ତାଙ୍କର ଅଧିକାଂଶ କବିତା ଜନସାଧାରଣଙ୍କ ହୃଦୟକୁ ଯେପରି ସ୍ପର୍ଶକରି ପାରିଥିଲା, ତା' ଅନ୍ୟକବିଙ୍କ ଭାଗ୍ୟରେ ଘଟି ନାହିଁ । ତେଣୁ ତାଙ୍କ କବିତା ରାଜଦରବାରରେ ଆବଦ୍ଧ ନରହି, ଜନ-ସାଧାରଣଙ୍କ ନିକଟକୁ ପ୍ରସରି ଆସିଥିଲା । ତେଣୁ ସେକାଳରେ ସେ 'ଗଣକବି' ଥିଲେ, ଏବେ ମଧ୍ୟ ଲୋକେ କଥାବାର୍ତ୍ତା ଛଳରେ କବିଙ୍କ ଖଣ୍ଡକବିତା ମୁହେଁ ମୁହେଁ ଆବୃତ୍ତି କରିବାର ଶୁଣାଯାଏ । କାରଣ କବିତାଗୁଡ଼ିକରେ ଲୌକିକ ଭାଷାର ଯଥାଯଥ ବ୍ୟବହାର ଓ ରସିକତା ପୂର୍ଣ୍ଣ ବ୍ୟଙ୍ଗୋକ୍ତି ଉତ୍କଳୀୟ ଜନସମାଜର ହୃଦୟକୁ ଆକର୍ଷଣ କରି ପାରୁଥିଲା ବୋଲି କହିଲେ ସତ୍ୟର ଅପଲାପ ହେବ

ନାହିଁ । ଏକଥା କହିଲେ ଆଧୁନିକ ଯୁଗରେ ଓଡ଼ିଆସାହିତ୍ୟ କ୍ଷେତ୍ରରେ ସ୍ୱର୍ଗତ କବି ବୈଷ୍ଣବ ପାଣିଙ୍କ କଥା ସ୍ୱତଃ ମନକୁ ଆସେ । କବି ବୈଷ୍ଣବ ପାଣି ଉଚ୍ଚଶିକ୍ଷା କିମ୍ବା, ମାଧ୍ୟମିକ ଶିକ୍ଷାରୁ ବଞ୍ଚିତ ହୋଇ ମଧ୍ୟ କବିଶ୍ରେଣୀ ମଧ୍ୟରେ 'ଗଣକବି' ବୋଲି ଆତ୍ମପ୍ରତିଷ୍ଠା କରିଯାଇଅଛନ୍ତି । ମୃତ୍ୟୁ ପୂର୍ବରୁ ରାଜ୍ୟସରକାର ତାଙ୍କ ଗୁଣର ଆଦର କରିଥିବା ସୁଖର କଥା ।

ଯଦୁମଣି ବାର୍ଦ୍ଧକ୍ୟରେ ଆର୍ଥିକ ଦୁର୍ଗତି ଭୋଗିଥିବାର ଶୁଣାଯାଏ । କବି ଓ ଲେଖକଙ୍କ ଜୀବନର ଏହା ଚିରସହଚର । ଯଥାର୍ଥରେ "ଲକ୍ଷ୍ମୀଙ୍କ ସପତ୍ନୀ ହେବାରୁ ବରଦା, ଦାରିଦ୍ର୍ୟ ଭୂମିର ସଙ୍ଗୀ ହେଲି ସଦା ।" ଏହା କବି ଓ ଲେଖକଙ୍କ ଲଲାଟ ଲେଖନ । ଯଦି କୌଣସିଠାରେ ଏହାର ବ୍ୟତିକ୍ରମ ଦେଖାଯାଏ, ତାକୁ ନିପାତନ ବୋଲି ବିଚାରିବା ଠିକ୍ । ଦୁଃଖ ଓ ଦାରିଦ୍ର୍ୟର କଶାଘାତ ସହ୍ୟକରି ୧୮୬୬ ମସିହାରେ ପଞ୍ଚାଅଶୀ ବର୍ଷ ବୟସରେ ଶ୍ରୀ ଗୁଣ୍ଡିଚ୍ଛଦନ କବିଙ୍କର ପରଲୋକ ହେଲା । ଅବଶ୍ୟ ମୃତ୍ୟୁ ସମୟକୁ ଏହାଙ୍କର ପରିଣତ ବୟସ ହୋଇଥିଲେ ମଧ୍ୟ ଏ କାଳର ବ୍ୟକ୍ତିଙ୍କ ପକ୍ଷରେ ଏହା ପରମାୟୁ ନୁହେ । ବାର୍ଦ୍ଧକ୍ୟରେ ଆର୍ଥିକ ପରିସ୍ଥିତିର ଭାରସାମ୍ୟ ଠିକ୍ ରହିଥିଲେ, କବିଙ୍କଠାରୁ ଉଚ୍ଚତର ଓ ଉନ୍ନତତର କାବ୍ୟ-କବିତା ଏ ଜାତି ପାଇଥାନ୍ତା । ୧୮୬୬ ମସିହା ଓଡ଼ିଶା ପକ୍ଷରେ ଗୋଟିଏ ଦୁର୍ବର୍ଷ । ଲୋମହର୍ଷଣକାରୀ 'ନଅଙ୍କ ଦୁର୍ଭିକ୍ଷ'ର ଭୀଷଣ ତାଣ୍ଡବଲୀଳା ଓଡ଼ିଶାରେ ସର୍ବତ୍ର ଲାଗିରହିଥିଲା । ଏହି ଭୀଷଣ ତାଣ୍ଡବଲୀଳା ମଧ୍ୟରେ କବି ଯଦୁମଣି ମାନବଲୀଳାସମ୍ବରଣ କରିଥିବାରୁ ତାଙ୍କ ମୃତ୍ୟୁଦିବସ ସମ୍ବନ୍ଧରେ ମତାନ୍ତରର ଅବକାଶ ନାହିଁ ।

ଆଜିକାଲି ପ୍ରାଚୀନ ଓ ନବୀନ କବିଙ୍କର ଜୟନ୍ତୀ ଦିବସ ଓ ଶ୍ରାଦ୍ଧବାସରରେ ଦେଶବାସୀ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସୁଖ ଓ ଆନନ୍ଦର କଥା । କବି ସମ୍ରାଟ୍ ଉପେନ୍ଦ୍ର, କବିସୂର୍ଯ୍ୟ ବଳଦେବ, ଗୋପାଳକୃଷ୍ଣ ଓ ଜଗନ୍ନାଥ ପ୍ରଭୃତିଙ୍କୁ ଦେଶବାସୀ ଶ୍ରଦ୍ଧାଞ୍ଜଳି ଦେଉଛନ୍ତି । କିନ୍ତୁ ପୁରାତନ ଗଣକବି ଯଦୁମଣି ଏଥିରୁ ବାଦ୍ ପଡ଼ିଯିବା ବିସ୍ମୟ ଓ କ୍ଷୋଭର କଥା । ଏପରି ପୂଜ୍ୟପୂଜା ବ୍ୟତିକ୍ରମ ଦେଶ ଓ ଜାତି ପକ୍ଷରେ ଶୁଭଙ୍କର ନୁହେ । ଏଦେଶର ସାହିତ୍ୟିକ ଅନୁଷ୍ଠାନମାନଙ୍କର ଏହା ପ୍ରଣିଧାନ ଯୋଗ୍ୟ ବୋଲି କହିବା ବାହୁଲ୍ୟମାତ୍ର ।

ଯଦୁମଣିଙ୍କର କବିଜୀବନର ଆଉ ଗୋଟିଏ ବିଭାଗ ପ୍ରତି ଦୃଷ୍ଟିଦେଲେ ଜଣାଯାଏ ଯେ ସେ ରାଜଅନୁଗ୍ରହରୁ ଧନସମ୍ପତ୍ତି ପାଉଥିଲେ ମଧ୍ୟ କବିତାରେ ରାଜାମାନଙ୍କୁ ତୋଷାମୋଦକରି ଲେଖିବା ତାଙ୍କ ପ୍ରକୃତିର ବହିର୍ଭୂତ ଥିଲା । ନିର୍ଭିକ ସତ୍ୟକୁ କଠୋର ଭାଷାରେ ପ୍ରକାଶ କରିବା ଦ୍ୱାରା ସମୟେ ସମୟେ ରାଜାଙ୍କ କୋପ-ଦୃଷ୍ଟିରେ ପଡ଼ୁଥିଲେ ମଧ୍ୟ ସତ୍ୟ ପ୍ରକାଶରେ ସେ ବିମୁଖ ନଥିଲେ, ପୁଣି ସରସ କବିତାରେ ରାଜଅନୁଗ୍ରହ ଲାଭକରିବା ତାଙ୍କ ପକ୍ଷରେ ସହଜସାଧ୍ୟ ଥିଲା । ତଥାପି ସ୍ପଷ୍ଟବାଦିତା ଓ ନିର୍ଭୀକତା କବିଙ୍କ ଆର୍ଥିକ ପରିସ୍ଥିତିର ଅନ୍ତରାୟ ହୋଇଥିଲା । ଏହି ଅନ୍ତରାୟ ହିଁ ତାଙ୍କ କବିଜୀବନକୁ ବଳିଷ୍ଠ ଓ ଯଶସ୍ୱୀ କରି ପାରିଛି ।

( ୪ )

ଲୁପ୍ତପ୍ରାୟ ଅପ୍ରକାଶିତ 'ରାଘବ ବିଳାସ' କାବ୍ୟର କେତେକ ଛାନ୍ଦରୁ କବିଙ୍କ ଶବ୍ଦପାଣ୍ଡିତ୍ୟ ତଥା ପୂର୍ବବର୍ତ୍ତୀ କବିଗଣଙ୍କ

ଅନୁସୃତ ପନ୍ଥାର ଅନୁସରଣ ଦେଖିବାକୁ ମିଳେ । କାବ୍ୟ ରଚନା ଆରମ୍ଭରେ ଭାରତୀୟ କବିମାନେ ଦେବଦେବୀଙ୍କ ବନ୍ଦନା କରି କାବ୍ୟର ବିଷୟବସ୍ତୁ ବର୍ଣ୍ଣନା କରିଥାନ୍ତି । ଶଂସିତ କାବ୍ୟରେ କବି ସେ ପନ୍ଥା ଛାଡ଼ି ନାହାନ୍ତି ।

(ରାଗ—ରାମକେରୀ)

ବନ୍ଦେ ରମା ସୂତା ପତିର ଧରାଧର ଶୟନ
ନିର୍ଜର-ପରର ନାଶନ ସନ୍ଥଙ୍କର ପାଳନ । ୧ ।
ଟାରକ୍ଷୁ ଜଣାଏ ରାସ୍ତାର କଷ୍ଟ ଫେଡ଼ି ହୃଷ୍ଟର,
ଚର୍ଣ୍ଣକପେଷି ଶଙ୍ଖ-ବାହନ ଭ୍ରାନ୍ତ ହର ସଂହାର । ୨ ।
ଅର୍କବଂଶୁ ହୋଇ ଉଦ୍ଭବ ତର୍କେ ଶୁନ୍ଦକୁମର,
ବାନାର୍କ ନନ୍ଦନ ଆର୍ତ୍ତିରେ ନାଶକରି ସତ୍ୱର । ୩ ।
ଦାରିଦ୍ର୍ୟ ନାଶିଣ ହରିଙ୍କି ହରି ହରି ଆସନେ,
ହରି ବିଭୀଷଣ ମଇନ୍ଦ ଯେବେ ସିଧି ସଘଟନେ । ୪ ।
ଅଷ୍ଟନେତ୍ର ପାଣି ଆୟୁଧ ଦୁହିତାର ବିରୋଧେ,
ହରି ହରି ନାଶୁଁ ତ ମଳଅର୍ଣ୍ଣବ ମଧ୍ୟେ । ୫ ।
କନ୍ଦର୍ପ ଦର୍ପାରି ତନୁଜ କନ୍ଧେ ବିଜୟ କରି,
ମୟୂଦୈତ୍ୟ ସୁତାପତିଙ୍କି ବ୍ରହ୍ମଣରେ ସଂହାରି । ୬ ।
ଚନ୍ଦ୍ରସୁତ ମିତ୍ର ଭ୍ରାତକୁ ଲଙ୍କେ କରି ରାଜନ,
ହରି ହରି ପତି ପତିରେ ପୟୋଦରେ ଅର୍ପଣ । ୭ ।
ଷଟ୍‌ପଦ ବାହନ ବାହନ ସୁତାପତି ଆନନ୍ଦା,
ସ୍ୟନ୍ଦନେ ବିହରି ସ୍ପନ୍ଦନେ ଯେବେ ଋଷି ନନ୍ଦନା । ୮ ।
ବାମପାଶେ ବାମା ଯେବେଣ ଅଭିଷେକ ହୋଇଲ,
ରାଜେନ୍ଦ୍ର ହେବାରୁଁ ରାଜ୍ୟକୁ ପ୍ରତିପାଳନ କଲ । ୯ ।

କଲ୍ପି କଲ୍ପି କେତେ କଲ୍ପିଲ ଶିଳ୍ପିଙ୍କର ବୃନ୍ଦର,
ବସି କଲ୍ପେ ଭଜଲ ଭୁଷ୍ଟି ନ ଗଲା ମୋର । ୧୦ ।
ଆହେ ସୀତାଧବ ମୋ ଖେଦ ବାରିରେ କର ମୋଚନ,
ହୟଗ୍ରୀବ ହୃଦେ ଚନ୍ଦ୍ରଣ ଯଦୁମଣି ରଚନ । ୧୧ ।

—୫୦୫—

(ରାଗ—କାମୋଦୀ)

ସଲକ୍ଷଣ ଲକ୍ଷ୍ମଣ ସଙ୍ଗେ ଘେନ ସୁକ୍ଷଣ
ଗମ୍ଭୀ ଇକ୍ଷଣେଁ ବହେ ଲୁହ,
ହା ହା ସୀତା ଅମୃତ- ଧାର ଦେଲୁକ ଚନ୍ଦ୍ରା
ଧାତା ଲେଖନ ହେଲା ବହ୍ନି ଗୋ ସୁଶୋଭାଙ୍ଗି !
ତୋ ବିନା ବନାରେ ନବୀନା,
ଆଉ ମୋ ଶରଣ ନାହିଁ ନା,
ଭାବମା-ଭାବ ଯେତେ, ଭାବ ଭାବ ନରତେ,
ଚେତଜଲୁ କାହା ଘେନ ମନା ଗୋ । ୧ ।
ଋଷି-ଯୋଗି-ମୋହନା ଗୁଣକୁ ଗୁଣିଗୁଣି
ଋଷିମୂକାଦ୍ରି ତଳେ ମିଳି,
ବାଳୀ ବଚନ ବଳଷ୍ଟେ ବଶ୍ୟତା ଘୃଟେ ଘୃଟେ
ନକୁ ନକୁଟ୍ଟି କୂଟେ ଲୁଚ ସେ ଗୃହମନ୍ତ୍ରୀ,
ପାଶରେ ନଉଣ୍ଡ ଅନୁଜ,
କହଇ ରବିର ଆତ୍ମଜ
କେ ମାର୍ଗେ ଆସୁଛନ୍ତି, ମାର୍ଗଣ ଧରିଛନ୍ତି,
ଯାଅ ଭୁ ବଟୁ ରୂପେ ହେଜ ସେ । ୨ ।

ଅର୍କ ପୁତ୍ର ବଦନ୍ତି ଭକ୍ତ ସୂକ୍ତ ମାରୁତି
ବେଦ-ଅଧ୍ୟାୟୀ ରୂପ ଧରି,
ସ୍ୱାମେ, ସ୍ୱାମ ପାଶରେ ପ୍ରବେଶିଣ ସତ୍ୱରେ
ଦେଖିଣ ଯଦ୍ଗିରି ଉଗ୍ରିର ସେ ତପଃଶୀଳ,
କାହାର ଅଟ ତୁମ୍ଭେ ବାଳ,
କି ନମିତ୍ତରେ ବନେ ଚଳ,
ଜଟା-ମୁକୁଟ-ପଟ- ଧରି ହୋଇ ଉଗ୍ରଟ,
ଭେଟିବ କାହାକୁ ତତ୍କାଳ ସେ । ୩ ।

ପିନାକ-ଅସ୍ତ୍ର ଭଞ୍ଜି, କୋଶଳ ନୃପମଣି,
ଦଶରଥଜ ଅଟୁଁ ଆମ୍ଭେ,
ଶତ୍ରୁ-ମାତୃ-ସତ୍ୟରେ ଅରଣ୍ୟାଗ୍ନ, ମଧ୍ୟରେ
ଗମନ୍ତେ ଭେଟ ହେଲ ତୁମ୍ଭେ ହେ ଋଷିକେଶ,
ପିଣ୍ଡରଖାଇ ମୋ ଜୀବନ
ନେଲା କେ ଦୁର୍ଦ୍ଦଣ୍ଡ ଭଞ୍ଜନ,
ଉଷଃବୁଧ ବଦନ କଲା କି ଦର୍ଭବନ,
ବାମାଙ୍ଗୀ ହାନେ ମୁଁ ଚେତନ ହେ । ୪ ।

କପୀଶ ବାଣୀ ଶୁଣି ମସ୍ତକେ ନ୍ୟସ୍ତ ପାଣି
ପ୍ରସ୍ତୁତ ମୂ ମୂ କରି ଭଣି,
ଝଟକ କବାଟକ ଦ୍ୱୀପେଶ ସେ ହାଟକ-
ଦେହୀ ଝପଟେ ନଏ ପୁଣି ହେ, ଚରଣୀରେ,
ଚରସ୍ତେ ହସ୍ତ ବ୍ୟସ୍ତେ,
'ସ୍ୱାମ, ସ୍ୱାମ କହି କାକୁସ୍ତେ,
ମଞ୍ଜ ତଳେ ତଞ୍ଜଳେ' ପାଇଣ ସହକଳେ
ବାଞ୍ଛା ଦେବାକୁ କହି, ସେ । ୫ ।

ହର ଭୟେ ଚାରଣ, ଯଥାକର ବାରଣ,
ହର ଉପୂରେ କ୍ରୁଧୀ ହର,
ଷଡଜା ଜାତ ବତ୍ସଳ ଲୁଟଅଛୁ ସେ ବଳେ
ଅଙ୍ଗାଭରଣ ତାଇକର ସେ ରଖେ ଯତ୍ନେ,
ଯଥା ନିର୍ଧନ ଧନ ରତ୍ନେ,
ଚଳନ୍ତୁ ଋଷ୍ୟମୂକିକ ରତ୍ନେ,
ମର୍କଟେ ସକପଟେ କୂଟେ ଚେଷେ ନିକଟେ
ହରଗଠ୍ ଉପୂରେ ପୁଣ ସେ । ୬ ।
ସଦାଗତି-ସନ୍ତତି ସଙ୍ଗେ କରଣ ଗତି
ଅହିମାକର ସୁତ ଭେଟି,
ଦେଖି ସୁଖୀ ସେକ୍ଷଣି ସୂତଲ ସେ ସେକ୍ଷଣି
ମସ୍ତକେ ନ୍ୟସ୍ତିପାଣି ଉଠି ସେ,
ଅଜାଙ୍ଗଦ-ଭୂଷଣ ସୁଷେଣ
ସନ୍ତାପ ତାପ ଉତ୍ତପନ
ସ୍ୱସାନ୍ତ ଶାନ୍ତ କର ସୁବୋଧେ ବୋଧକର
ସତତ କଲେ ସେ ଲକ୍ଷ୍ମଣ ଯେ । ୭ ।
ବନରେ ବନବାସୀ, ବନବାସରେ କ୍ଲେଶୀ,
ଲେଖିଛୁ ଧାତା ନେତ୍ର ଏକ
ରାଷ୍ଟ୍ର ତନୁଜାନୁଜ ଦେହୀ କଷ୍ଟ ସହଜ
ହରିଙ୍କି ହରବ ଏ ଏକ ହେ, ବନାୟୁକ
ବନାୟୁକରେ କେ ନାୟୁକ
ବେନିଙ୍କି ଏ କଷ୍ଟ ଦାୟୁକ;
ଏକ ବଂଶେ ଉଦ୍ଭବ, ମିତ୍ର ହେବା ସମ୍ଭବ
ବୋଲଅ ପାଣିଙ୍କି ସାୟୁକ-ସ୍ନେହ । ୮ ।

ଛୁନ୍ତ ଆଉ କର୍ତ୍ତନ କରବ ବର୍ତ୍ତମାନ
ନବର୍ତ୍ତୀନ୍ଦ୍ର ଇବ ନଇ ଯ,
ବୋଲୁ ସୁଗ୍ରୀବ ଗ୍ରୀବ ଫୁଲାଇଣ ଉଦ୍‌ବେଗ
ବୋଲଇ ଏକଇ ବୃତ୍ତାନ୍ତ ହେ,
କର୍କଶରେ ଶକ୍ର ନନ୍ଦନ ।

× × × ×

କୋଳରୂପେ ଭୂଧର ଯବମାନେ ବଳୀର
ସର୍ବ ଗର୍ବକୁ ଖର୍ବ କଲେ,
ଅଙ୍ଗୁଷ୍ଠି ଅଗ୍ରେ ବ୍ୟଗ୍ରେ ସ୍ଥିତ ଅସ୍ଥିକ ଶୀଘ୍ରେ
ଅନ୍ତରୀକ୍ଷରେ ଛୁଡ଼ିଦେଲେ ସେ ମାର୍ତ୍ତଣ୍ଡଜା,
ଛର୍କେ ବଜ୍ରର କରେ ନିନ୍ଦା,
କରମାଳାର କରତେଜା
ମେଦାନ୍ଧ ସୂକ୍ଷ୍ମ ନଷ୍ଟ ଚନ୍ଦ୍ରରେ ଯଥା କାଷ୍ଠ,
ଏଣୁ ଏ ବୋଇଲ ଦୂତ ଘାସେ । ୧୦ ।

ଜଳଦ-ପତି ସୁତ କହେ ଏକ ବୃତ୍ତାନ୍ତ
ସିନ୍ଧୁ ତଟକୁ ଛେନ୍ଦବାରେ
ଯବନାଶ ତନ୍ତୁଁରେ ବେଷ୍ଟିତ ଅଛୁବାରେ,
ବିଚ୍ଛେଦ ଛେଦ ତନ୍ତୁଁ ଥରେ ହେ ରଘୂତ୍ତମ,
ଖର ପ୍ରାକର୍ମରେ ପ୍ରାକର୍ମ,
କେ ଯର କେଶରୀ ସମ,
ଭୁଜଙ୍ଗ ପତିଭୂଷା ବନ୍ଧତେଜ ମମାକ୍ଷ
ଖଣ୍ଡ ପ୍ରହାରୁଁ ଅତ ଖ୍ୟାମ ସେ । ୧୧ ।

ସନ୍ତୋଷ ରବିସୁତ    ଦୃଢମତ ଭାବିତ
ମିତ ଗୁଣ ଚିନ୍ତି ଚେତଶତ
ରୁଷ ମିତେ ସନ୍ନଦ୍ଧ,    ଏମନ୍ତ ସେହ୍ନମତ
ଉଚିତ ଚିତ୍ତରେ ସନ୍ତି ସେ ବୀରଭଦ୍ର,
ଅଗ୍ରଜ ଟେକ୍ ଦେଖା ବ୍ୟଗ୍ର
କେତ ଦଶାଚିଂ କରି ଶୀବ୍ର
ବାଳବଳ ଚଳଣ    ବାଳୀ ହେଲେ ଦେଇଣ
ଚଳିବ କ୍ଷଣ କରି ଶୀଘ୍ର ହେ ।୧୨।
ଆରଦ ବାନ୍ଦୁ ଗ ସ    ବେନ ହେନ ସଙ୍ଗତ
ଅବ୍ଜ ବାନ୍ଧବ ସୁତଗତି
ଶର ହରଣୀ ମଧ    ତାଳତାଳ ଶବଦ
ଜାଣି ପୁନନ୍ତ୍ର ରଘୁସୁତ ହେ,
ନଗାଇଣ ମନ୍ଦମନ୍ଦ କାର୍ମୁକ
ବାସ ହୃଦ ଇନ୍ଦ୍ରକଲ୍ପ ବିଶେଷ,
ବାରବାର ଝଟେଡି
ଚେଷ୍ଟେ ନୃତ୍ତ ଚପେଣ ହେ ।୧୩।
ହରି ହରି ଦ୍ୱାରରେ    ହରି ସେ ହରଷରେ
ହରି ଅନୁଜ ଧରି ମିଳି
ଧଡ଼ଧଡ଼ ରଡ଼ିଛୁଞ୍ଜି    ଶୁଣି ଦନ୍ତୁରଗଡ଼
ଝଟେଡି ଧପଟି ସେ ବାଳୀ ସେ ପାଶେମିଳି
ମାଇଲା ବଜ୍ର ମୁଥ ଠୋକି;
ବାହୁଇ ରକତ ନିକଳି,
ଗର୍ଜି ତର୍ଜି ବିଭାଜ    ହେଲାଏ ମୃତ୍ୟୁ ହେଲା
ଋଷ୍ୟମୂକରେ ଯାଇ ମିଳି ସେ ।୧୪।

ବଣାଠଣା ନପାଲ୍ଲି        ଅନ୍ୟ ବଳରେ ଯାଇ
କାଲୁ ପେ ମହାଭପୁ ପାଇ,
ଦମ୍ଭକୁମ୍ଭ ଭଞ୍ଜନ        ମୃତ୍ତୁ ସମ୍ଭବ ହେନ
ହୋଇଛୁ ଅତି ଦୁଃଖୀ ସେହୁ ଯେ; ବାରସିଂହ,
ସୁମନେ ଗମନେ ତକ୍ଷଣେ,
ଖୋଜ ଭେଟିଲେ କଛୁ କ୍ଷଣେ;
ଜଞ୍ଜିର ମିନଗାହେ        ବଳ ନାହିଁ ଯେ ମାହେ,
ଚଞ୍ଚଳେ ଚଳେ ଆଉ କ୍ଷଣେ ସେ । ୧୫ ।
ସ୍ୱାର୍ଥେ ବ୍ୟର୍ଥେ, ଅନର୍ଥେ        ନଗ୍ରଣେ କାଦର୍ଥେ
ନୃପନାଥରେ ନାହିଁ ଆଶ,
ବୋଲୁଁ ସ୍ୱଘବ ନବଗ        ଭ୍ରମନ୍ତି ଉଦ୍‌ବେଗ
ପ୍ଲବଗ ଲଘବେ କ ଯଶହେ ଚହ୍ନସ୍ଥାନ,
ଏକସ ଗାସ ହେ ମଇସ,
ଏଣୁ ନ ମାର କଙ୍କପସ
ସୁଧୀରେ ଶତ୍ରେ ଧୀରେ        ପ୍ରବୋଧି ଏ ବଧିରେ
ମଇସେ କଲେ କୋଳାଗ୍ରତ ସେ । ୧୬ ।
ବାଳୀ ପ୍ରବଳ ବଳ        ହେଲୁ ପ୍ଲବଗକୁଳ
ଶାର୍ଦ୍ଦୂଳ କୋଟି କବା ମେଳ
ସଦାଗତି ଗତିରେ        ଧାଇଁ ଯାଇ ଧାଉଁଛେ
ସ୍ୱଚ୍ଛେଜ ନିର୍ଭୀକ ପ୍ରବଳ ସେ, ବାରଥାର,
ଦ୍ୱାରେ ତର୍ଜିଗର୍ଜି ଶେଷରେ
ସନ୍ଧାନ ବଜ୍ର ପତନରେ
ଛାଗପତି ଶ୍ରୁତିରେ        ମାନ ଆନ୍ଦୋଳନରେ
ସ୍ୱେଷେ ତ୍ରୋଷେ ମିଳି ଖରେ ସେ । ୧୭ ।

ଅନ୍ତୀକ ଦନ୍ତୀ ମାତ୍ର ବେଣୁବନେ ସୁଝନ୍ତ
କ୍ଷିତିଜଚନ ଧାତକାରେ,
ଅନ୍ତ ଦୁହିତା ପତି ଗର୍ଭ ବେଗରେ ଗ୍ରନ୍ତ
ପର୍ଯ୍ୟନ୍ତ ଟାଣି ବନ୍ଧ ଶର ସେ ବୃକ୍ଷ ପୃଷ୍ଠେ,
ବାଜି ବାଜିଲା ଯାଇ ହୃଷ୍ଟେ
ବାଳୀ ବଳ ବକ୍ଷେ କହେ କଷ୍ଟେ,
ଦଶରଥ ନନ୍ଦନ ସୁଲକ୍ଷଣ ଯେନଣ
ବାହାର ମନୁଯାଇ ଗୃହେ ସେ । ୧୮ ।
ନାଳ ଶ୍ରେଷ୍ଠ ନନ୍ଦନ କହେ କମ୍ପାଇ ପୁଣ
ହର ହରରେ ନେଲ ପ୍ରାଣ
କି ଯଶ ପଞ୍ଚରୁଷ ହେଲ ଚୋର ପ୍ରକାଶ
ମିତ୍ରାର ବୋଲ ମାର ବାଣ ସେ ବାନ୍ଧଲଣି,
ଧରଣୀ ହରଣ ରାବଣ,
ନେଇଛନ୍ତି ସେ ଆଣି ଦେବଣ,
ଜଣ୍ଟି ନେଶ ପ୍ରକାଶ ସେ କାର୍ଯ୍ୟ ହେବ କ୍ଳେଶ
କହନ୍ତ ତେହୁଁ ରଘୁରାଣ ହେ । ୧୯ ।
ଶଲ୍ୟ କାଢ଼ି ବିଶଲ୍ୟ କର ମୋତେ କୌଶଲ୍ୟ,
ବୈକୁଣ୍ଠ ବୈକୁଣ୍ଠ ମୁଁ ଯିବ,
ଏମନକ ସେ ମନ୍ତ୍ରୀ ମନ୍ତ୍ରୀଶ ଉଚ୍ଚେ କହି
ମନ୍ତ୍ରୀରେ ଶୋଇଲାକ ଭାବ ସେ ହରଷରେ,
ହର ସେ ହର ସିଂହାସନେ,
ଗଜାଧିବଧି ସିଂହ ସଣେ
ଉତ୍ତୃଟେ ଯୁନଗଟେ ତଗଇ ବାଳୀ ଗୃହେ
ଭାର କୋଳରେ ସାଙ୍ଗୀ ପଶେ ସେ । ୨୦ ।

( ରାଗ—ଚୋଖି )

ବନଜ ଜାତ ବଦନ ସଙ୍ଗେ ଅନୁଜଦେହନଣ,
ଶ୍ରୀହ୍ମାନନ୍ତ ସେ ଶିଟଶ୍ୱ ଅଗ୍ରେ ରକ୍ଷଣ,
ବନ ଘନଘନ, ଘନ ଉସର୍ଗେ ରତ୍ତି ନର୍ଜନ
ବର୍ଦ୍ଧୋପଲକୁ ସର୍ଜନ କରାଇପୁଣ,
ଶାମୁକ ଚନ୍ଦ୍ରକ ଅନେକ
ଅମ୍ବୁଗର୍ଜନରେ ବୃଷକଣ୍ଠ ନର୍ତ୍ତକ । ୧ ।

ଚଞ୍ଚଳା ଚଞ୍ଚଳ ଖେଳା ଧବଳ ବଳା ମାଳ ଧଳା
ଶକ୍ରବକ୍ର କୋଦଣ୍ଡ ପ୍ରଚଣ୍ଡ ଚଢ଼ିଲା
ହରିତ ଭୂଶିତ ଘୋଟି ହରିବଚିତ୍ର ଜ୍ୟୋତି
ହାଟକ ଝଟି ପ୍ରକଟି ଘୋଟିଅଇଲା
ଶୁଷ୍କ ପୁଷ୍କରରେ ପୁଷ୍କର
ସ୍ଥଳଅସ୍ଥଳ କେଦାର ପୂର୍ଣ୍ଣସ୍ରୋତର । ୨ ।

କାମିମା ଜନନାୟକ କ ଟିମା ଜନନାୟକ
ଜଳଜଳ ସପୂଠକ କଲ୍ଲ ଉଦ୍ରିକ
ଅହ୍ୱିତ ଅହ୍ୱିବଂଶକ ବହ୍ୱିତ ହ୍ୱିତନାଶକ
କାମକମାଣ ପାଞ୍ଚକ ମାର ଶାୟକ
ବରହ୍ୱଣ ବରହ୍ୱଣୀପ୍ରେ,
ଅଶନ, ବସନ, ବାସ ବିଷପରାପ୍ରେ । ୩ ।

ବାଲନାଶ ବାଳକ୍ଷୀନେ ହେବାରୁ ଅତିଉଛନେ
ଗୃହ୍ନିଁ ଅନୁଜବଦନେ ଏସନ ଭଣି,
ଏକାଳ ସଘଟଘଟ ଘଟ ନେବାକୁ ମୋ ଘଟ
ଢନଚରପ୍ରେ ବିଘଟ ହେବଟି ପୁଣି,
ହଂସନରଣ ହଂସଭୁଟିବ,
ଅଂଗତ ନଗତ ପଥ ହେଜବ । ୪ ।

ଅଳିବଣାଳାରେ ନୃପ— ଲାଗି ଅନେକ ବିଳାପ
କରି ବରହଣୀ ତାପ ହୋଇ ବିଶେଷ,
ସତେ କଲିଙ୍ଗ ଲଭିବ ଦୈବ୍ୟ କ୍ଲେଶକୁ ଖଣ୍ଡିବ,
ବିଶେଷ କଣି ଆଶ୍ଳେଷ ବିଲାଇପାଶ,
ସୀତା ଦିଶଇ କି ସୀତାରେ
ବାସାକଣା କଣ୍ଠାବାଣୀ ଶୁଣିବ ତାରେ । ୫ ।
ମୁଦିରେ ଧୀରେଅଧୀରେ କହନ୍ତି ଯାଯାବଧୀରେ
ମୋ ନାଗ୍ର ପାଶେ ବଧିରେ କହିବାଗ୍ରେରେ
କହି ମୋ ଭାଦ୍ୟ ଉଦ୍ଦେଶ୍ୟ କ୍ଲେଶ ନ ରହିବ କ୍ଲେଶ
କି କରୁଛି ସେ ନାଗ୍ରୀ ହୋଇକାତର,
ଚଉତରେ ଯାଅହେ ଧୀର
କି ନଗମଧାର ବହିଲ ହୋଇ ଜସୁର । ୬ ।
ବର୍ଷାନ୍ତ ଅନ୍ତଅନ୍ତରେ ଊର୍ମିଳେଶ ସେ ସଭରେ
କହ୍ଲିଛେଶ୍ୱର ପାଶରେ ମିଳି ଝଟେତି,
କରେ ଅଶ ଗବନାଶ ସୀମନ୍ତେ ଫଣା ବିକାଶ
ପଙ୍କଜାର ଜାତ ପାଶେ ମିଳି ତଉତ
ଗୁରୁ ଗୁରୁ ତରୁତଳରେ
ଉଗ୍ର, ଚୋଖ ଲେଖ ହୋଇ ବାଇଟେକାଳେ । ୭ ।
ଦୂତେ ପଚୃଶ ଉଗୃଶ କହଯାଇ ଦଣ୍ଡଧାଗ୍ର-
ପାରୁଶରେ ଶ୍ରୀପ୍ରଭୁଙ୍କର ଚପଳେ ମିଳି,
ଲକ୍ଷଣେ ଲକ୍ଷଣ ପୂର୍ଣ୍ଣ କର୍ଣ୍ଣିକାର ଫାନ୍ତିକାଶ
ଘଞ୍ଚାଶ ଦ୍ୱାରରେ ଉଭା ଅଛନ୍ତି ବଳୀ
ବାର୍ତ୍ତାବହ ବନ୍ଧନ ଗଲି
ଲକ୍ଷ୍ମଣ ଦ୍ୱାରେ ପ୍ରବେଶ ବୋଲି ବୋଇଲି । ୮ ।

କେଉଁ ଲକ୍ଷଣ ସେଷଧା          ଏକାଳି ବୁଝିଣ ଆଣ
ମୂଷଣେ ଭୂଷଣ ମାନେ ଦଶ୍ବର ଦ୍ୱାସ୍ଥ
ଆଜ୍ଞା ପ୍ରାରତି ମାରେ          କେଉଁ ଲକ୍ଷ୍ମଣ ସଲ୍ଲଭ
ଭୂରନ୍ତ ହ୍ନକଭରେ କହ ର୍ଣଗୃର
ଯେ ରାମ ଏ ଜିଭୁତ ଦଉ
ସେ ଅନୁଜ ଶ୍ରୀ ଲକ୍ଷ୍ମଣ ନାମ ବିଦତ । ୯ ।

ବ୍ୟସ୍ତେ ଦଗୃର ଉଦନ୍ତ          ଆଗତଗତ ଭୁରିତ
ବୃତାନ୍ତ ଅଗ୍ର ନୃପତେ ତକ୍ଷଣେ ଭାଷି,
ବିଭୂତ ଭୂତ କେରାମ          ରାମଆରାମ କେରାମ
ବିଭ୍ରାନ୍ତି କେହ୍ନଏ ରାମ ଏହା ପ୍ରକାଶ
ବାଣୀଶ୍ରୁତି ଉଦିଲ୍ଲ ଦ୍ୱାସ୍ଥ
ଜାଣି ପ ଣିନୃପ ପାଣି ମନେ ବଜ୍ରର । ୧୦ ।

ତର୍କ ଶୁଣି ଅର୍କବଂଶ          ଅବତଂସ ମହାରୋଷ
କର୍କଶେ କାର୍ମୁକେ ବାଣ ବସାଇ ଟାଣି,
ଭଡ଼ଭୁଡ଼ ଦ୍ୟନ୍ତେ ରଡ଼          ଯଥା ମେଘ ଘଡ଼ଘଡ଼
ଶୈଳ୍ପିକ ଉପଳ ଝଡ଼ ପଡ଼ିଲା ପାଣି
ବାଜ ବାଜ ଦୋଳ ସ୍ତମ୍ଭରେ
ବୋଳପରୁ ଢ଼ଳପଡ଼ ତୋଳ ତାରରେ । ୧୧ ।

ଉଚାଟେ ସତେ ସଟେଟେ          ସୁକ୍ତ କରାଇ ସମସ୍ତେ
ବସାଇ ରସାଇ ତନ୍ତ୍ରୀ ମିଶାଇ କନ୍ତ୍ରୀ
ତାରବାଳୀ ଅର୍ଘଥାଳୀ          କରେ ଧରି ଯାଇ ମିଳି
ନଉଛଳ କଲେ ଶୀଘ୍ରେ ଲକ୍ଷ୍ମଣ ଯାଇ,
ମଣୀଙ୍କୁ ଜଣାଇ ଭଣ୍ଡାଇ
ପୋଷାଜନ ନାଶିବାର ଶାସ୍ତ୍ରରେ ନାହିଁ । ୧୨ ।

ଶୁଣନ୍ତେ ଶାନ୍ତ ସନ୍ତୋଷ ଦାଳୀବାଣୀ ଉର୍ମିଳେଶ
ସୁଧୀର ଧୀର ହୋଇଲେ ଅଧୀନ୍ନତେଜ,
ଅଙ୍ଗଦ ଜରେ ଅଙ୍ଗଦ ଅଙ୍ଗ ବେଶରେ ପ୍ରମୋଦ
ସଙ୍ଗେ ସଙ୍ଗେ ଅଙ୍ଗବଳ ରଙ୍ଗେ ବଜ୍ରଜ,
ଦେଖି ସୁଖୀ ତତ୍‌କ୍ଷଣରେ
ସୁଗ୍ରୀବ ଉଦ୍‌ଗ୍ରୀବ ଶତ୍ରୁ ଯିବା ଇଚ୍ଛାରେ । ୧୩ ।
ମୂଖବବ ଶବ୍ଦରେ ବଦ୍ଦଗ ଦଗ ଉଚ୍ଚରେ
ପ୍ରତରେ ଘୋଟିଲେ ଅସ୍ତ୍ର ଶାଖା ମୁଗର
ଚଳ ଦ୍ରୁତଳ ଚଞ୍ଚଳେ ଧୂଳେ ଉଡ଼େ ଅମଣ୍ଡଳେ
କେହୁ ବାଳା-ବଳ ଚଢ଼େ ଆଗ ପାଶର,
ରବସୁତ ମିତ ବ୍ରତରେ
ସୁଗ୍ରୀବ ଉଦ୍‌ବେଗ ମନେ ଗମେ ସତ୍ତ୍ୱରେ । ୧୪ ।
ସୁମାଲ୍ୟ ମାଲ୍ୟବନ୍ତରେ ବପିନଚର ସୁବଳେ
ସବଳେ ଦଶରଥଜ ପାଶେ ମିଳିଲେ
ଲକ୍ଷ୍ମଣ ଲକ୍ଷ ପ୍ରଣାମ ସୁଗ୍ରୀ ଗଦ୍ଦ ପାଣି ସ୍ୱମ
ପଡ଼ି ରକ୍ତାବ୍ଜ ଚରଣେ ଶରଣ ଗଲେ;
ତୋଳି, କୋଳ କୌଶଲ୍ୟାବାଳ
ତାର ପରେ କ୍ଷିତିସୁତ ସକଳ ବାଳ । ୧୫ ।
ଅଷ୍ଟ ଦୁର୍ଗ ଏକଶ୍ରେଷ୍ଠ ମୁକୁଟମଣି ସମ୍ରାଟ୍
ଶେଷ ଗିରି ସୁତାଗୃହ କେଶଘ ଭଣି,
ସ୍ୱଘବେ ସ୍ୱଦ୍ଧବ ତୋଷ ନାମ ସ୍ୱଦ୍ଧବ ବଳାସ
ଭବଳଭକୁ ପ୍ରକାଶ ବଦ୍ଧନ ଶ୍ରେଣୀ
ଧାତ୍ରୀ ଶିର ନଗ୍ର ଅଗ୍ରୀଣୀ
ତରଣୀ ବଂଶ ଉଦ୍‌ଭବ ଏ ରସ ଶ୍ରେଣୀ । ୧୬ ।

---

(ହରି ଚଈତନ୍ୟ ବାଣୀ—ବୃତ୍ତ)

ମିତ୍ରଙ୍କୁ ଏକାନ୍ତେ ଭୂଷଣେ ପ୍ରାଣରେ ଡକାଇ ଭାଷନ୍ତେ ବାଣୀ,
ଦୂତ ଚଳିଯାନ୍ତେ ଯେମନ ଉଦନ୍ତେ ବଦନ୍ତି ବୀର ଅଗ୍ରଣୀ
ସେ —ଭକ୍ତି—
ଶୁଣି ପୂର୍ବଦେବ ଉସ୍ତ ନାଡ଼ି ସେ । ୧ ।

ଯହିଁ ତହିଁ ରହି ବହୁ କଷ୍ଟ ସହି ବହି ଅନୁତାପ
ଦନ୍ତିଙ୍କୁ କଳଙ୍କ ବଳଙ୍କ ଅନେକ ଧିକ୍ ଉପମା ବଲୋପ ହାନ୍,
କାଣ ପୀୟୂଷ ହାସ ପ୍ରକାଶତା
ବାସ ସୁବାସ ଅଙ୍ଗ ପ୍ରକାଶତା । ୨ ।

ଏବେ ଶର୍ବରୀ ପୂର୍ବଦେବ ଗର୍ବକୁ ଖର୍ବ କରେ ମା ଆଶିଷ,
ଗଜଦନ୍ତୀ ମତ୍ତ କରନ୍ତି ଝଟନ୍ତି ହାତ ଗତିଏ ପ୍ରକାଶ ସେ କାହିଁ,
ରହି ବେଷ ବହି ବଇଦେହୀ ସେ,
ତାହା ବହୀନେ ମୋ ସୁଖ ନାହିଁ ସେ । ୩ ।

କୃପପାଣି ବାଣୀ ଶୁଣି ସୁଗ୍ରୀବଙ୍କି ସୈନ୍ୟ ଡାକଆଣି ପୁଣି,
ଶୋଚନ ମୋଚନ ରଚନ ବଚନ ଦଅ ତରୁଣୀ ହେ ବନ୍ଧୁ
ଯିବେ ବଳ ଚଳବେଟି ସବୁ ହେ
ଦର ହରଣ ହୃଦୟରେ ଭାବୁ ହେ । ୪ ।

ଚତୁରେ ଚତୁର ନଗରେ ଚତୁର ଗୃହରେ ସେ ଗୃହିଁ
ଲଙ୍କେଶ ଶନ ଉପମାଭ୍ରମା ସୀତା ବଶେଷିଣ ସୀତା କହି ସେ ଯାଇ,
ବନ୍ଧିଯିବ ନାଗା ପତ୍ନୀ ଦେହୀ ସେ,
ଭେଟି ଝଟନ୍ତି ଲେଉଟି କହି ସେ । ୫ ।

ଦିଗବଳି ଦିଗବିଜି ଦିଗବଳି ଚଳି ଟଳିଲା ନକ୍ରକଳେ,
ନାଗ ନାଗର ନାଗପୁର ଭୂତଳେ ସର୍ବେଶ୍ୱରର ବୁଲିଲେ ସେ ଅନ୍ୟେ,
ମାରନଟେଁ ମାରନ୍ତି ଝୁଣ୍ଟନ୍ତି ସେ
କର ଅଙ୍ଗୁଳିକି ସେ ଦଅନ୍ତି ସେ । ୬ ।
ମରୁତ ସୁତ ମାରୁତେ ବନ୍ଧି ଦଂନ୍ତେ ଆରତ ଗନ୍ଧ
ଅଙ୍ଗଦ ଅଙ୍ଗଦେ ଜମ୍ବୁବ ସ୍କନ୍ଧେ ଅଷ୍ଟ ଦୂତକୁ ଗୃହ୍ନି;
ଖରେ ଖରେନ୍ଦ୍ର ଖଞ୍ଜତ କନ୍ଧ ସେ
ମୁଖ ଲକ୍ଷ ଚକ୍ଷ ବୃଦ୍ଧି କାହିଁ ସେ । ୭ ।
ଗୁପତେ ଉଦନ୍ତ ଚ୍ଛଦନ୍ତ କରନ୍ତେ ଡିସକୃଠ କୃଟେ ମିଳ
ଭାସ୍କର କରରେ ଟୁଷ୍ଟ କରନ୍ତେଣ ମନ୍ଦମନ୍ଦ ଦିବସ ଭାଳ ସେ ବେଳେ,
ଆଳି ଭାଳି ମିଳି କେଳିପୁରେ ସେ
ଚଣ୍ଡି ପର ଧର ଖଣ୍ଡିବାରେ ସେ । ୮ ।
ପୁଷ୍ପଜାତ ଶଯ୍ୟା ପୁରତେ ଭୃଶତେ ଗମଟିନ୍ତ ସେ ଉଷତେ
ଶୌଯ୍ୟ ତେଜ୍ୟା ତେଜ ଗାମ୍ଭୀର୍ଯ୍ୟ ଏଶ୍ୱର୍ଯ୍ୟୀ ତେଜ୍ୟା ବର୍ଜ୍ୟା
ମର୍ଜ୍ୟା ଜାତ ସେ ବାସେ,—
ମନ୍ତ୍ରିବାଣୀ ସେ ବାଣୀ ନ ଶ୍ରବଷ ସେ
ରମ୍ଭା, ଶମ୍ଭା ଗୋଷ୍ପ ଅନୁକମ୍ପା ସେ । ୯ ।
ଶିଖୀଶିଖା ଦେଖାଇଣ ସୁକୃତରେ ସୁକୃତ କୃତ କୃତରେ
ଜୀବନ୍ତ ସନ୍ତତ କଶବୁ ଏମନ୍ତ ଯେ ସୀତା ସୀତାରେ ଯେ ବ୍ୟତ୍ରେ,
ପ୍ରାଚୀ ଅବାଚୀ, ଦକ୍ଷିଣୀ ଦିଗ ସେ
ସ୍ୱାତ ଜ ଚଳେ ଉଦୀଚୀ ଶୀଘ୍ର ସେ । ୧୦ ।
ପୂର୍ବେଷୁ ଶ୍ରେଷ୍ଠେ ଅନ୍ବେଷିର ଯେ ଗବେଷୁ ମଣିକିଷ୍ଟେ ଚଳିଗଲେ,
ସାରେଣ ଗୃହ ପ୍ରାଣ ଅବାଣ ଦକ୍ଷିଣୀ ଶ୍ରୁତ ସଞ୍ଜ ଝାଡଅଣରେ ସେ;ବୁଲି—
ଛନ୍ଦ ଚହ୍ନି ପିତୃପକ୍ଷ ମିଳି ସେ
× × × × । ୧୧ ।

ଲବଣ ପୁଣ୍ଡ୍ରୀକ ଛିନ୍ନ କଳସ ବେନୀଯୁକ୍ତ ଇନ୍ଦ୍ରପ୍ରସ୍ତୀ
ଅଞ୍ଚିଳ ବଳୀଏ କୁସୁମ ରଞ୍ଜନ ଛେଦନ ଗଲେକ ଜଣି ସେ, ସୀତା—
ସୈନ୍ୟ ଶିର୍ନ୍ତାରେ ଅଭ୍ର କ୍ଷାନ୍ତ ତା ସେ
ଖୋଜ ଖୋଜ ବସିତା ସେ । ୧୨ ।

ସୁଷେଣ ସୁଷେଣ ଜମ୍ବେବ ଜମ୍ବେବ ମାରୁତେ ମାରୁତେ ଗଛେ,
ଲୁଣ୍ଠରେ ନପାନ୍ତ ନଳ ନୀଳ ତୁଷ ବୈଦେହୀ ବୈଦେହୀ
ଗଛେ, ସେ—ଯାଇ
ସିଦ୍ଧ ବନ୍ଦ୍ୟାଞ୍ଚଳ କୁଟେ ତହିଁ ସେ
ହୃଷେ ଅଷ୍ଟସୈନ୍ୟ କଷ୍ଟେ ରକ୍ଷ ସେ । ୧୩ ।

ବିଷାଦେ ସବ ସ୍ୱାଦ ଗୃଧ୍ରକୁ ପୃଷ୍ଟେ ସମ୍ପାତିରେ
କଟକେ ଝଟକ ଦେଖିଲେ କଟକ ଅଟକ ଲଙ୍କା ନଗରୀ ସେ ତୋଟେ
ଦେଖି ଅର୍ଣ୍ଣବେ ଆସିତା ପାଶେ ସେ
ଉଚ୍ଚ ଶ୍ୱାସ ତେଜ ଅବଶେଷେ ସେ । ୧୪ ।

ବଧିରେ ବଧୂରେ ପ୍ରବୋଧି ବଧିରେ ବଧି ମଙ୍ଗଳ କରନ୍ତୁ
ଜମ୍ବେବ ସମ୍ଭବେ ଆରମ୍ଭ ସମ୍ପାରେ ଭାଷନ୍ତେ ଶୀଘ୍ର ଗମନ୍ତୁ
ସେ, ଗଲ— ମୈନାକେ ମୈନାକେ ମିଳିଲେ ସେ
ସିଂହିକାରେ ସିଂହିକାରେ ଚଳେ ସେ । ୧୫ ।

କ୍ଷୁଦ୍ର କଦ୍ରୁ ଗୃହି······ଧପଟି ସୁବଳେ ସୁବଳେ ମିଳି,
ହରି ହରଷରେ ଲଙ୍କା ହରଦ୍ୱାରେ ହରି ବିହାରି ସେ, ଖାର
ଦେଖିବାରେ ବଶେକର କର ସେ
ଯଥା ବୈକୁଣ୍ଠେ ବୈକୁଣ୍ଠ ହରଷେ । ୧୬ ।

ଉଗ୍ରକେ ଛନକେ ଗୃହିଁଲେ ଛନକେ କେଶଲ୍ଲ କେଶଲ୍ଲ ବୋଲ୍ଲି,
ବାରୁଣୀ ଅସ୍ତାଚଳେ ଭ୍ରେଲ ଉଦରେ ମାରୁତଜ ଯାଏ ଚଳି ସେ,—
ଜଳି— ଜନ ନିଃଶ୍ୱଧ ଦେଇ ଅର୍ଗଳି ସେ,
ଯାତୁଧାନେ ଯାତୁଧାନେ ମିଳି ସେ । ୧୭ ।

ଲଙ୍କାରେ ଲଙ୍କାରେ ବୁଲନ୍ତେ ଲଙ୍କାରେ ଲଙ୍କଦେବତୀ ଘାରେ,
ଦେବବର ଘରବର ହେଲ ଦ୍ୱାର ଦ୍ୱାରକାର ମାଳ କରେ ସେ ଭ୍ରମି
ଦେବାଙ୍କ ଗୋଷ୍ଠ ଭ୍ରମଣେ ଭ୍ରମି ସେ
ଚନ୍ଦ୍ରୀ ସ୍ତମ୍ଭ ପାଶେ ପୁଣି ଘୁରି ସେ । ୧୮ ।
ଉତ୍ତର ଦେବର କନକ ମନ୍ଦିର ମଧ୍ୟେ ମିଳି ବାଲ୍ମୀକିଜ,
ସୀତା ଏ ବଟେ ସୀତାରେ ଭ୍ରମି ସୀତା କଲ ମନ୍ଦବୁଦ୍ଧି ଆଜ୍ଞା ମୁଁ
ଧିକ;— ଶିବ ମଲ୍ଲୀ କଲ ସ୍ୱଗ୍ର ଲକ୍ଷ ମୁଁ
ରକ୍ତ ଗୁଟଞ୍ଜ ଗୁଞ୍ଜିଲ ମାଣିକ୍ୟ ମୁଁ । ୧୯ ।
ଅଶୋକେ ଅଶୋକେ ଅଶୋକ ଶୋକରେ ମିଳି ଅଶୋକ ବନରେ
ରାମ ରାମ ରାମ ଉଚ୍ଚାରଣ ରାମେ ସମ୍ଭ୍ରମେ ମର୍ଦ୍ଦେ ବୃକ୍ଷରେ ସେ,
ଦେଖା— ବାଣୀ ଶୁଣି ଶୁଣି ମନେ ଭାବ ସେ
କ୍ରବ୍ୟା ମାୟାରେ ମାୟାରେ ଭାବ ସେ । ୨୦ ।
ଗୁପ୍ତବାଣୀ ବାଣୀ ମନ୍ଦର ସେ ଗ୍ଲାନ ସମ୍ବରଣପୁର ବାର୍ତ୍ତା
ଦଅନ୍ତେ ଅଙ୍ଗୁଷ୍ଠି ଦୂଷଣ ଭୂଷଣ ଭୂଷଣ ଦେଲେ ଦେବତା ସେ,
କାଳେ— କହେ ଲଙ୍କଦେଖା ଲଙ୍କ ପାଳେ ସେ,
ତୋର ବଂଶ ଧ୍ୱଂସ ଏକାବେଳେ ସେ । ୨୧ ।
ସ୍ୱପ୍ନାନ୍ତେ ସଚେତେ ଉଚତେ ସଚେତେ ଦୂରତେ ଯାନ୍ତି ଅଶୋକେ,
ପ୍ରଚଣ୍ଡେ ଚଣ୍ଡେ ସେ ତର୍ଜି ଉଦଣ୍ଡେ ଉଣ୍ଡି କହଇ ସେ ବାକ୍ୟ ସେ,
ପତ୍ତ,— ଦେଖାଇବୁ ବେନି ମାସେ କତ୍ତ ସେ;
ଭଜନ୍ତ ହେଲେ ହେବୁ ମୋର ସୀତା ସେ । ୨୨ ।
ବୁଦ୍ଧି ପ୍ରବୋଧି ମାରୁତେ ସିଦ୍ଧି ବଧି ପବସ୍ୱେ ଅନ୍ତର ହେଲ,
ହଂଶତ୍ତ ପେଷିତ ବନେ ଉପଗତ ଯଥା ରମ୍ଭା ନାଶ ହେଲ
ତା ଜାଣି—- ଶ୍ରେଷ୍ଠ ଜ୍ୟେଷ୍ଠକୁ ପେଷିଲ୍ଲ ପୁଣି ତା
ନକୁଳ ଭୂଷାରେ ବାନ୍ଧି ଆଣି ତା । ୨୩ ।

ପେଚକ ଶିଖୀ ଦଗ୍ଧ କଟେଣ ଛାଟେ ଜଗ୍ଧପ ଛଳ୍ପେ ଜଳେ,
ଦହିଲା କନକପୁର ଲଙ୍କାନାଙ୍କ ଦହନ ଦହନ ବେଳ ସେ, ସାଶ,
ନଗମରେ ଧର୍ମଙ୍କୁ ଟାଳ୍ ସେ
ବେଳେ ସୁବେଳେ ବଳ ପାସୋଶ ସେ । ୨୪ ।

ନିବଳ ନିବେଳ ହୋଇଣ ଆକୁଳ ବ୍ୟାକୁଳେ ବାଣ୍ଡି ଫୁଲେ,
କେଣ୍ଡି ଶୁଣା ମାନେ ହସି ପ୍ରବେଶିଲେ କହଇ ସମ୍ଭାଳ ଘେନେ ସେ,
ଛନ୍ଦ,— ଅଗ୍ରେ ଶୀଘ୍ରେ ସୁଗ୍ରୀ ଭେଟ ସେ,
ସବେ ପ୍ରଣତି ହୁଅନ୍ତ ସେହୁ ସେ । ୨୫ ।

ପ୍ରମୋଦ ମଦେ ସ୍କନ୍ଦିକା ମୋଦ ଫେଡଦେଲେ ସୁମିତ୍ରା ନନ୍ଦନ,
ଧର ରାମ ରାମ ଧର ରାମ ରାମ ହୃଦୟେ କଲେ ସ୍ମରଣ ସେ ଭକ୍ତି,
ନୃପ ଶନାପ୍ତକ ସିଂହ ପୃଣି ସେ
ସ୍ମର ହୃଦୟେ ଗୃପି ଟାଣି ସେ । ୨୬ ।

---

(ରାଗ—ବଙ୍ଗଳା ଶ୍ରୀ)

ଦ୍ୱିଜବର ବର ଶତ୍ରୁ ସ୍ୱଭାବର
ଧଶ କାତର ଚରରେ,
ହା ହା ସୀତା ସୀତା ହୃଦେ ଶକସିତା
ହାର ମୋ ମୋହର ମୋହର ରେ, । ୧ ।

ଅନାଥରେ ଅନା-ଧଶ କର କର
କଶ ଗତି କେଣେ ଗଲୁ,
ତୋ ବନା ହିତାରେ କେହ୍ନ ଅଛୁ ହିତାରେ
ତେଜ ଅହିତା ହୋଇଲୁ । ୨ ।

ଚିନ୍ତା ଜଳଧିରେ ବୁଡ଼ାଇ ସ୍ମୃତିରେ
ଆଶା ବନ ଶିରେ ଅବନୀଶିକେ ନାଶିରେ ।୩।

ହୃଦପୁରେ ମଣି ହୃଦପୁରେ ମଣି
ମଣି ଅସ ଝଲ୍‌କୁରନ୍ତି;
ନୀରଜ ଗାତ୍ରରୁ ନୀରଜ ନେତ୍ରରୁ
ନୀର ଅଧୀରରେ ଧାର ।୪।

ଏକାଳେ ସେକାଳେ ମିଳି ତତ୍‌କାଳେ
ବକଳେ ଆକୁଳେ କୁଳେ
ବୁଦ୍ଧି ପ୍ରବୋଧିଲେ ଅଜ୍ଞାଁ ବୋଧରେ
ବଧିରେ ଧୀରରେ ବଳେ ।୫।

ଉତ୍ତମାଙ୍ଗେ ମାଙ୍ଗେ କରକୁ ପ୍ରସଙ୍ଗେ
ତରଣୀଜ ରଙ୍ଗେ ରଙ୍ଗେ
ସନ୍ତାପ ତାପକୁ ଏ ଦୁଃଖ ହେବାକୁ
ଦେଇ ନାଶୁଛନ୍ତି ଅଙ୍ଗେ ।୬।

ଅତେବ ନୃପଜା ଶ୍ରୀକୁଚ କସ୍ତୁରୀ
ଶୁଣି ଶ୍ରବଣେ ଶ୍ରବଣେ
ସତେ ଶିବ ହେବ ଶିବ ପ୍ରକାଶିବ
ଶିବ ଭୂତକ ଗ୍ରହଣେ ।୭।

ଭଲ ଲଗ୍ନ ଲଗ୍ନ ବୁଝିଲ ଫଳରେ
ସ୍ଥାନ ଉଚ୍ଚାରେ ହିତରେ
ଦ୍ୱିଜ ବୃନ୍ଦ ମୋଦ ହୋଇଣ ପ୍ରମୋଦେ
ମୋଦେ ଦେବରୁଚି କଲେ ।୮।

ଫେରିବ ଜୀବନ ନାୟକ ଛେନଣ
ଅର୍ବାଚୀ ମାର୍ଗରେ ଧୃଢ
ଅକୂଳେ କୂଳେ ସଂକୂଳେ ଅନୁକୂଳେ
ଚଳେଚଳ ପୁଷ୍ଟିବେଷ୍ଟିତ ।୯।
ସରଯୂତୀର ବର୍ଦ୍ଧାଣ୍ଣ ବାହାର ଯେ
ତ୍ରମ୍ଭେ ଜନଜ କନ୍ଦରେ,
ଗୌତମ ତନୁଜ ଆମ୍ଭଙ୍କ ଦ୍ୱିଜ
କରଜବାଣ କରରେ ।୧୦।
ସଶତପତ୍ର କୂଳରେ ପ୍ରବେଶିଲେ
ବଳ ପ୍ରବଳ ସକଳେ
ଦ୍ୱାରପନ୍ତ୍ରମତ୍ତ ଅଙ୍ଗବଳ ଯେନ
ସଙ୍ଗେ ସଙ୍ଗେ ରଙ୍ଗେ ଚଳେ ।୧୧।
ପ୍ଳବଗକୁଳ ବଳ ପ୍ରଗବ ଚଳ
ସିନ୍ଧୁକୂଳେ ହୋଇ ମେଳ,
ମୁଖର ଶବଦେ ସିନ୍ଧୁ ଗର୍ଭ ଭେଦେ
ସର୍ବେ ଆନନ୍ଦ ବିହ୍ୱଳ ।୧୨।
ବାହାନାକ ଆଣ୍ଠେ କରକେ ପ୍ରକଟ
ଝପଟ ଧପଟ କରେ,
ବନ୍ଧମାଳରଙ୍ଗ ଅତହିଁ ସୁରଙ୍ଗ
ସିନ୍ଦୂର ନନ୍ଦା ପ୍ରକାରେ ।୧୩।
ମଣ୍ଡୀଜା ବିଳାସୀ ଏ ସମୟେ ଭସି
ହାସି ବିଶେଷି ବିଶେଷି
ଏ ପ୍ରକାରେ ସ୍ଥିତ ଆରତ ମୋ ସ୍ଥିତ
ହସ୍ତ ଅସ୍ତ୍ର ହେଲ ଆସି ।୧୪।

ଷ୍ଟୁବଳପ୍ରେ ସେହି ନପ୍ତା ଅନ୍ତେ ସେହି
କହି ଉହି ସେ ମାଝରେ,
ଏ ଅର୍ଣ୍ଣବ ପାରେ ଅଛେ ଲଙ୍କାପୁରୀ
ନାଶି ଭୁମ୍ବର-ନ୍ୟସ୍ତ ପୁରରେ । ୧୫ ।
ବାର୍ତ୍ତାବହ ବହନରେ ନରେ ସରେ
କହିବାରେ ବାରେଚନ୍ତେ,
ଝବ୍ୟାଦ ଶ୍ରେଷ୍ଠରେ କହିବା ଶ୍ରେଷ୍ଠରେ
ରଘୁସୈନ୍ୟ ସିନ୍ଧୁକୂଳେ । ୧୬ ।
ବିନାୟକ ବିନାୟକ ଶ୍ରେଷ୍ଠ କଷ୍ଟ
ଫେଡ଼ ବିପତ୍ତି କ ତ୍ରୋଟି,
ରାଘବ ରାଘବ—ବିଳାସ ଏରସ
ନାମହ୍ରଦେ ଘୋଷି ଘୋଷି । ୧୭ ।

—ଃ୦ଃ—

( ବିଭୀଷଣ ଶରଣ ଛାନ୍ଦ )

ପୂର୍ବ ଦେବତା ଶର୍ବରୀ ଭର୍ତ୍ତା ଆଗେ ଦୂତବାର୍ତ୍ତା କଲ ପ୍ରକାଶ,
ଅଶୋକବନେ ସଶୋକେ ଥିବା ବଧୂ—ବନ୍ଧୁ ସିନ୍ଧୁ-କୂଳେ ପ୍ରବେଶ,
ହାସ ରସରେ, ଭଷିଲାଷି ଭୂଷିଲ-ଦଶଗ୍ରୀବ,
ନାଶି ବହ୍ନିନେ ବାଉଧି ଝାସେଚନ୍ତୁ ନାଶିବ ବୋଲ ଆସିଥିବ ।୧।
ବନ୍ଦେତ ଅନୁଜ ପବନତନୁଜ ଗମନୁ ଯାଇଛୁ ଦେଖା ଯେ,
ଟେକଲ ଏଥର ଗାହ ଗୋହାନ୍ତକ ପ୍ରବଳ ଅନଳ ଶିଖା ଯେ,
କୋପେ ଲଙ୍କେଶ, କର୍ମି ଅନାଇଲ ନିନ୍ଦନେ,
ପ୍ରଶସ୍ତହସ୍ତ ମସ୍ତକେ ନ୍ୟସ୍ତକର ଚୋଷିଲ ଏ ଭଷା ନନ୍ଦନେ ।୨।

ତାଙ୍କୁ ଦୃଷ୍ଟି ନ୍ୟାସ କିମ୍ବା କଳ୍ପନା ତାହାକୁ ହେବ ଏ ପ୍ରାଙ୍ଗନ
ଯେବେ ଉତ୍ସୁରତ ହେବ ମୃତ୍ୟୁ ବିଧେବ ଲଭିବ ମୃତାହ ପଞ୍ଚକ,
ସତ୍ୟ ରାବଣ, ଧର୍ମ୍ମ ବିଭୀଷଣ ବୋଇଲେ
ସିନ୍ଧୁ ମଧ୍ୟସ୍ଥିତ ସ୍ୱର୍ଣ୍ଣଖଚିତ ସାମ୍ରାଜ୍ୟ ନାବ ଉପଗମାଇଲେ ।୩।
କେଶରୀ ଗର୍ଭୁଁ ଉଦ୍ଭବ ପରାଭବ ହେବ ର ସିବାର ଖବଇ
ଜୀବନ ସେବନ-ବୀର ଚରଣ ଶରଣରେ ଦଅ ଭରାଇ,
ମହାରାବଣେ—ସ୍ୱହିଁ ରାବଣ ଆଜ୍ଞା କଲ,
କହନ୍ତେ କରଧର ଜାମ୍ବୁ ସମ୍ମରୁ ଲମ୍ଫବାନ୍ ହୋଇ ଚଳିଲେ ।୪।
ଦୁର୍ଗ ପ୍ରାକାର ପାରକରି ଦଅନ୍ତେ ଅନାନ୍ତେ ବଣ୍ଡ୍ରବାତନୁଜ,
ରହି ଖବଳ ରଥାଙ୍ଗ ଶରଣ ପିବରେ ଖାତ ପବନାନୁଜ ଧ୍ୱଜ,
ଗୁରୁଚରଣେ, ଶରଣ ପଶିବ ଯାଇ ଯେ,
ଦପ୍ସା ନ କେତନ କେତନ ଉଡ଼ୁଛି, ଚନ୍ଦ୍ରାହେବ କାହିଁପାଇଁ ଯେ ।୫।
କପିସୃଷ୍ଟିଙ୍କ ଦୃଷ୍ଟି ବୃଷ୍ଟି ଏକାଳେ ହେଲା ବଧ୍ୟଧରଣ ପିଣ୍ଡେ ଯେ,
ଖବଳେ ଭବଣାନନ୍ଦ—ଦଗ୍ଧାଗ୍ନିର ଧୂମକେତୁ ସମଖଣ୍ଡ ଯେ,
ମତେ ଶୋଭନ୍ତ, ହୋଇଅଛି ଦେଖରାଜ ହେ,
ଶ୍ରୀ ରାମ ଶରଣ ରକ୍ଷକ ଡାକିଲେ ଦନୁଜରାଜ ଅନୁଜ ଯେ ।୬।
କରପ୍ରସାରି ଆସ ଆସ ଭଣିଲେ ମର୍କଟ ମୁକୁଟାଳଙ୍କାର
ପୁଣ୍ୟ ଜନବାଣୀ ପୁଣ୍ୟ ଜନଶ୍ରୁଣି ପ୍ରବେଶ ହୋଇ ତତ୍କାଳ,
ରାମାରମଣ, ପ୍ରେମାନନ୍ଦ କଲେ ଆଶ୍ଳେଷ,
ରାବଣାନୁଜ ଛଳନ୍ତେ କିଷ୍କିନ୍ଧ୍ୟା ପୁରସ୍ଥିତ କଣାବତଂସ ।୭।
ହେଲା ପବନ ନେତ୍ର ଗାତ୍ର ଭୂମ୍ବର ଦରଶନ ପରିରମ୍ଭରେ,
ଦମ୍ଭକରି ମୋତେ ଶରଣ ରକ୍ଷଣବାନା ବନ୍ଧାହେବା ସ୍ତମ୍ଭରେ,
ରତ, ବାର୍ତ୍ତାରେ ନୁହ କନ୍ଧ ଯାଇ ତପନେ
ଅପିଷ ପ୍ରକ୍ଷକ ରକ୍ଷକ ନୋହିବଲ ଗଡନାହିଁ ମହାମନ୍ତ୍ରଳେ ।୮।

ଶୁଣି କପିମଣି ତତ୍‌କ୍ଷଣେ ଗତମନ୍ତ୍ରୀ ପ୍ରୀତିକରେ ଯାଇ,
ସୀତାନାଥରେ ହାତଯୋଡ଼ି କହିଲେ ଜ୍ୟୋତିର୍ମ୍ମୟ ବେଶସଜ୍ଜ ସାଇ,
ବୀରବତଂସ ଚଢ଼ିଲେ ଗନ୍ଧହସ୍ତି ହସ୍ତରେ
ଦଶମସ୍ତକ ଅସ୍ତ୍ର ପାଠପୁସ୍ତକ-ଖଣ୍ଡି ଯାଚି ଦେଲେ ହସ୍ତରେ ।୯।
ସୁଷେଣଙ୍କୁ ଶୁଣି ରଘୁବଂଶପତି ଜ୍ୱାଣକୁମର କହିଲେ,
ହେ ଦୂଷଣପର ଶରଣଙ୍କୁ ଲଙ୍କାଭୂଷଣ ଅନୁଜ ଅଇଲେ,
ହୋଇ ବିନତ—ମୋତେ ତବ କତି ପେଷିଲେ,
ଦୟା ବିଗ୍ରହ ଅନୁଗ୍ରହ—ବିଗ୍ରହ ହୋଇଲେ ଭୃଷିଲ ଭାଷିଲେ ।୧୦।
ସୁଗ୍ରୀବଠାରୁ ଶୁଣିଣ ଜାମ୍ବବନ୍ତ ବନ୍ଧାସରେ ଚଳୁଁ ନେତ୍ରାନ୍ତ,
ଶତଶଙ୍କ ଜଟାରଲ୍ଲ ଗରଯଶଙ୍କୁ ଝରେ କେବେ ଜ୍ୟୋତ୍ସ୍ନାଁ ଅମୃତ
ଶୁଣି ମାରୁତ, ବଦନ୍ତି ଉଚିତ ନୋହିଲା,
ବିଶାଖାସଖା କଲେ ଦ୍ରୁମ ନବଘନ-ଫଳ ଫଳବରେ ଶୋହିଲା ।୧୧।
ଫୁଲ ପ୍ରଫୁଲ୍ଲି ମଳେନ୍ଦୀବର ନେତ୍ର-ମିହ ମୁଖ ଶୁଣି କହିଲେ,
ଜନକତନୟା ବିନୁ କିଞ୍ଚିତେ ଭାନୁଟର ଗୁଣ କହିଲେ,
ଯେବେ ସଉଗ, ବିଗୃହେ ତେଣିବା ଶ୍ରୁତିକ
ଲକ୍ଷ୍ମଣଙ୍କ ପଦପୂରଣ ଦୂଷେଣ ଭୂଷଣ ନୋହିବ ମିତକ ।୧୨।
ବନ୍ଧାହୋଇ ବନ୍ଧାଇଛୁ ଫନ୍ଦାହାନ—ଜନହିତ କୁତବାନାକୁ
ଅବଧି ବିଚାରି ନଇଉଗ୍ରୁଣ ଗତି ପଗୃଚିତ ଯେନ ଯେନାକୁ,
ରତିବାର୍ତ୍ତାରେ, ନୁହ-ଆଣଯାଇ ବନ୍ଧନ,
ବିଶ୍ରବାନନ୍ଦନ ସନ୍ନିଧିଗମନ ସୁଧାନିଧି ହେଲେ ତକ୍ଷଣ ।୧୩।
ସୀତା କୁନ୍ଦନ କୁଚକୁମ୍ଭ ଚନ୍ଦନ ବନ୍ଦନ ସ୍ତମ୍ଭରେ ଭ୍ରମର ·
ଶ୍ରବଣ କରଉ ଦ୍ରବ ଯାଉକରି ଭୁମ୍ଭଙ୍କୁ ନେବାକୁ ସତ୍ୱର,
ସଉମିତ୍ରିଏ, ଗନ୍ତି ଆରମ୍ଭିଲେ ଉତ୍ସବେ,
ରମାରମଣ ବଲ୍ଲଭ ଭାବେକହି ଦେଖାଇଲେ କରପଲ୍ଲବ ।୧୪।

ବନ୍ଧୁ ତୋଷେବେନ ଦୋଷ-ପୋଷାତ୍ମଜ ସୁମିତ୍ରାକୁମର ପଦୂରେ,
ନମିକରପଦ ଯୋଡ଼ିଲେ ଘୁଟନ୍ତ୍ରି ପ୍ରପନ୍ନ ପ୍ରକାରେ ଲପୂରେ,
କପି ଶେଖରେ—ଧରେ ଗନ୍ଧର୍ବ ଲହେ କୁମୁଦ,
ବଳମ୍ବ ଅରୁଣବନ୍ଧୁ ଛଟେରଜ୍ଜୁଷ୍ଟି ଗମନ ପ୍ରମୋଦ କୁମୁଦ ।୧୫।
ଦୂର୍ବାସାଦପୂଜ୍ୟ ଦୂର୍ବାଦଳ ତେଜ ପୂର୍ବାଶା ମୁଖରେ ବସି ଯେ,
ଗୃତକ ଟହାଟି ଲେକତ ଘନକୋଟି ପଗତପୁ ଭେଟିଲେ ଆସି ଯେ,
ଦୂର, ଦୁରତ, ଭୁରଟେ ବଣ୍ଣବାକୁମର
ପୂର୍ବପର୍ବତ ବହ୍ବାସ୍ତ ହେଲେ ହଂର ଯଥା ଗର୍ବଖର୍ବ ଗବିର ।୧୬।
ଭକ୍ତିଲେ କରଯୁଗ ଯୋଡ଼ି କପିନ୍ଦ୍ରଂୟା ଈଶ ରଘୁବଂଶ ନାଥ ହେ,
ପାଇଲେ ସକଳ ଜମ୍ବୀଳ ପଦାର୍ଥ ଲଭିବାକୁ ସାମରଥ ହେ
ଶିଶୁଅଧରେ ହାସଜାତକଲେ ଶ୍ରୀରାମ
ନନ୍ଦାଳ କଳ୍ପଦ୍ରୁମରେ ଉଦ୍ଭବା ମକରନ୍ଦସ୍ଥିତ କୁସୁମ ।୧୭।
ଶୋଭି ସଲିଲେ ଇନ୍ଦ୍ରମଳ ନାବରେ ଖେଳାମଲ୍ଲ ପରି ଚନ୍ଦ୍ରିକା,
ଆସ ଆସ ଭାଷପ୍ରକାଶୁଁ ବଢ଼ିଲ୍ଲ ଦାଡ଼ିମୁଖ ଶୋଭି ବଢ଼ମା,
ବହୁସୁମାଳ, କୁମାସ୍ତ୍ର କୁମର ଜାଣିଲ୍ଲ
ଧୂର୍ଜଟୀ ଶତ୍ରୁ ସଂପୁଟ ପଦୁରାଗ-ମଣି ପଦୂରେ ପ୍ରଣମିଲ୍ଲ ।୧୮।
ନଖାବଳ ଝଳକର ସେ କାଳରେ ଲଭିଲେ କୁଞ୍ଚନା ଗତକ
ପିଟାଇଲେ ଲୁଟିଲେ ନଟିଳ ପୁରୁଡା କୁଟିଳ ସଂସର୍ଗ ସଞ୍ଚକ,
ପ୍ରେମବଶରୁ, ରସିଥିଲ୍ଲ ଶିର କମ୍ପନେ
ଅଞ୍ଜୁଲ୍ଲଇ ଯୋଗେ ଫୁଲ୍ଲଇ ହେବାରୁ ଝୁଲ୍ଲଇ ରଖିଲ୍ଲ ଯତନେ ।୧୯।
ହେ ବଳବନ୍ଧୁ ଉଠ, ଉଠ, ଭଷ୍ଟୁଁ ଉଠି କରଯୁଗ ଯୋଡ଼ି ରହିଲେ,
କୂଟ ବଦ୍ୟାକାର ମୁକୁଟକୁ କପି ତ୍ୟାଗକଲେ ବୋଲବୋଇଲେ,
ଷଡମଣ୍ଡନା, ମଣ୍ଡହରସିଜ—ରବି ହେ
ବୈଚତ୍ୟ ଶର୍ବଶାଶ ଗର୍ବପର୍ଣ୍ଣତକୁ ମୋ ବଚନା ହେଲ୍ଲ ପର୍ବ ହେ ।୨୦।

ଶେଷ ସ୍ୱଦେଶ ଚାମରସ୍ୟ ହବନାଶ କାନନର-ହେଲ ଦ୍ୱିରଦ,
କହଁ ମଧବ ବଧବାର ଉଚିତ, ନୋହିଲେ କ ଏହୁ ବରଦ,
ନବମଚେଦ, ସୁନ୍ଦରଚରଣ ଯୁଗଙ୍କୁ
ଲଭିଲ ଯାହାପାଇଁ ଯୋଗ କରନ୍ତି ଯୋଗିବୃନ୍ଦ ଯୁଗ ଯୁଗକୁ ।୨୧।
କହୋହାଇ ଚଗନ୍ଧିଣୀ ବାଣୀରେ ଭଣିଲେ କମାଇ କାମୁକ,
ନିଜରେ କହ ତୋ ସୋଦରେ ଶୋଭିତ କେତେ ବଳ ଗୁଣବନ୍ତ
ଭ୍ରାତାକୁମର, ଚତୁରଙ୍ଗ ରଙ୍ଗ ବଧି ଯେ;
ଶୁଣି ପାଣି ଯୋଡ଼ି ଭଣିଲ ଅଶେଷ ବଂଶପାଣି ଆଣି ହିଧି ନଯ ।୨୨।
ବୃନ୍ଦାରକ ବୃନ୍ଦାବନ ଦର୍ପବାତେ ସର୍ପ ହେଲାପରି ବାହାର
ମନ୍ଦୋଦରୀ କୁଚ ବହାର ନହାର କବରୀ ଭ୍ରୂଲତା ବହାର
ଭୁଜଦଣ୍ଡର, ମଣ୍ଡନ କୋଦଣ୍ଡ ବରଳ
ବାଜିଗଲେ ଭଜ ରଜରାଜହେବେ ଚାଞ୍ଚଳ ମଞ୍ଚମଣ୍ଡଳ ।୨୩।
ମହାବଳଙ୍କୁ କୁଳଶ୍ରେଷ୍ଠ କନିଷ୍ଠ ଭ୍ରାତା କୁମ୍ଭ ଶ୍ରୁତି ତୃପ୍ତିକ,
ଘଟନା ଲମ୍ପଟ ବଧିର ବଧାତା ଗଢ଼ାହେଉ ନାହିଁ ଶ୍ରୁତିକ,
ଯହା ଜଗତ, ବଜାପ୍ତ ବାଜଣା ଧ୍ୱନିକ
ଶୁଣିଲ୍ୟରି ଭ୍ରମରେଗ ଆପହେ ଧନେଶ୍ୱସୁତ ମୂର୍ଦ୍ଧନିକ ।୨୪।
ଯାହା କେଂହ୍ୱସୁତ ଆସି କଷିବାରେ ଟସିକର ପାଣି ଟଳିବେ,
ଢଷି ନାଗିଲ ନକପାଳ କଟାଳ ଲେଖା ବର୍ଣ୍ଣାବଳୀ ବଉବେ,
ଯାହା ଖାଟେନ୍ଦ୍ର. ଟଣତ୍ରଣଂସା ଆଚରଣ
ବଳବନ୍ତକୁଳ ବଳଦୂର୍ବାଦଳ ଜଳନେରଥାଙ୍ଗ ଟେଳନ ।୨୫।
ହସ୍ତ ସମୁଦାୟ ବନ୍ଧନକଧନ ତ୍ରିଧାନ କନକ ଶୃଙ୍ଖଳା,
ଦ୍ରଷ୍ଟାଉହୁଏ ଯବନବଦ୍ୟା ଅର୍ଥେ ଅନୁସରନ୍ତି କଂଚପଳା,
ଗଜେ ଶୋଭିତ, ସଜାଇନ୍ଦୁଗଜ ସମରେ,
ମେରୁକଇଳାସ ଆଦ୍ୟପ୍ରାନ୍ତେ ଦୃଶ୍ୟ ହୁଅନ୍ତି ଯାହାଙ୍କ ସ୍ମୃତରେ ।୨୬।

ପବଗ ଶଳଭଟର ନାଦ ଦେବୀପ୍ରସାଦ ବଂଶର ବିନ୍ଧୁ ଯେ,
ଚଡ଼ି କୁମାରନାମ ସୋମଶେଖର କରମବଣରୁ ବିନ୍ଧୁ ଯେ,
ଯାହାର ପ୍ରତାପ, ତୁର୍ଯ୍ୟଚ୍ଚୟା ଦୋଷୀ ନ ଯୁକ୍ତ,
ଯୋଗ୍ୟ ବଶରୁ ଦ୍ୱିରଦ ମୁଖେ ଗୃହପଦେ ହୋଇଲେ ବନାୟୁକ ।୨୭।

ଅଭିମାନଅଭି ହୋଇ ଯୋଡ଼ି ଜୀବାଣୀ ରଣୁଥାନ୍ତି ମହିମା,
ପରଦ୍ରମଦା, ପ୍ରମାଦମଦରେ ପଡ଼ି ଯେ
ରହିଛନ୍ତି ତୁମ୍ଭ ଅରମ୍ଭବାନା ବାତପରରମ୍ଭେ ଯିବ ଉଡ଼ି ଯେ ।୨୮।

ଶୁଣି ରଘୁମଣି ଭଣିଲେ ଜାଣିବା ରଣରେ ବୀରେନ୍ଦ୍ର ପଣ ଯେ,
ଏକାକାଣ୍ଡିକେ ପ୍ରାଣୀପଡ଼ି କଣ୍ଠରେ ପ୍ରାଣ ହେବ ସମର୍ପଣ ହେ,
ଆତ୍ମପ୍ରମାଣ, ଜାଣିଛଉଁ ଧନୁକମାଳ,
ଆଜଠାରୁ ଲଙ୍କାମଧ୍ୟରେ ମହେନ୍ଦ୍ର ତବ ପଦ ହେଲ ନିର୍ମାଣ ।୨୯।

କହେ ମିତ୍ରପୁତ୍ର ହୋଇଲ ବଚନ ଚନ୍ଦ୍ରଭାନୁ କୁଳାମ୍ବୁଜକୁ,
ସମର୍ପି ଜନକ ତନୁଜା କନକ ମହେନ୍ଦ୍ର ଚରଣାମ୍ବୁଜକୁ,
କଲେ ଆଶ୍ରିତ, କା ହେବ ଶ୍ରବଣେ ରାଘବ,
ଭଣିଲେ ଜାଣିବା ବନ୍ଧୁବନ୍ଧ ନାହିଁ ରାଜ୍ୟଭ୍ରଷ୍ଟ କଷ୍ଟ ରାଘବ ।୩୦।

ଭଣିବା ଭଙ୍ଗୀରେ ଯାହାକାଳ ତାକୁ ମାନ ଖାଣ୍ଡିଯୋଗ ପାଇଲ,
ହେଲେ ଦୁର୍ଯୋଗ, କଳ୍ପନାର ଯୋଗ ହୋଇବ,
ବାଳସୁତକୁ କାଳୀଅଞ୍ଜନ କମ୍ବଳ ଅସୁରକୁଳେ ସେ ସମ୍ଭବ ।୩୧।

ହିରଣ୍ୟ ଗର୍ଭଜା ହରହରମ୍ମୁଖ ଦରହାସ କାନ୍ତି ସୁନ୍ଦର,
ବନାୟୁକ ପାଶେ ଆରକ୍ଷୀ ଧରଣୀ ନୃସିଂହଙ୍କୁ ଚିନ୍ତି ମନର,
ଛଡିରଛତ, କରୁଣାଶିରୋମଣି ମାନ୍ଧାତା
ବନାୟୁକସିଂହ ବୋଲେ ବେନମୂର୍ତ୍ତି ମୋର ତାପହନ୍ତା ସହିତା ।୩୨।

— ସମାପ୍ତ —